# ବିଚିତ୍ର ପଶୁପକ୍ଷୀ

ଅଧ୍ୟାପକ ଶାନ୍ତନୁକୁମାର ଆଚାର୍ଯ୍ୟ
ଶ୍ରୀମତୀ ନିରୂପମା ଆଚାର୍ଯ୍ୟ

ଗ୍ରନ୍ଥମନ୍ଦିର

# ସୂଚୀ

## ପଶୁପକ୍ଷୀଙ୍କ ବିଷୟରେ
## କେତେକ ଜାଣିବା କଥା



□ □ □

# ବିଚିତ୍ର ଜୀବ ସ୍ଲଥ୍

ଦକ୍ଷିଣ ଆମେରିକାର ଜଙ୍ଗଲରେ ଏକ ପ୍ରକାର ପ୍ରାଣୀ ଦେଖାଯାଆନ୍ତି । ସେମାନେ ମାଙ୍କଡ ଭଳି ଗଛରେ ରହନ୍ତି । କିନ୍ତୁ ମାଙ୍କଡଙ୍କ ଭଳି ଏମାନଙ୍କ ଗତି ଏତେ ଚଞ୍ଚଳ ନୁହେଁ । ଏହି ସ୍ତନ୍ୟପାୟୀ ପ୍ରାଣୀମାନଙ୍କୁ ସ୍ଲଥ୍ କୁହାଯାଏ । ଏମାନଙ୍କର ଆଉ ଏକ ବିଚିତ୍ର ଅଭ୍ୟାସ ହେଲା ଅଧିକାଂଶ ସମୟରେ ଏମାନେ ଗଛଡାଳରୁ ଝୁଲି ରହିଥାନ୍ତି । ହାତ ଓ ଗୋଡର ନଖରେ ଡାଳକୁ ଭିଡିଧରି ଚିତ୍ ହୋଇ ଝୁଲୁଥାନ୍ତି । ଏମିତି ଝୁଲି ରହି ସେମାନେ ନିଘୋଡ ନିଦରେ ମଧ ଶୋଇପାରନ୍ତି । ସେଥିପାଇଁ ସେମାନଙ୍କ ହାତ ଓ ଗୋଡର ମାଂଶପେଶୀର ଗଠନ ଭିନ୍ନ ପ୍ରକାରର । ଶୋଇପଡିଲେ ଏଇ ମାଂଶପେଶୀଗୁଡିକ ଟାଣ ହୋଇଯାଏ ଓ ଜନ୍ତୁଟି ନଉଠିବା ପର୍ଯ୍ୟନ୍ତ ତାହା କେବେହେଲେ କୋହଳ ହୁଏ ନାହିଁ । ତା'ଫଳରେ ସ୍ଲଥ୍‌ମାନେ ଗଛଡାଳରୁ ଝୁଲି ଶୋଇଥିବା ଅବସ୍ଥାରେ ଖସିପଡିବାର ଭୟ ନଥାଏ । ଏହିପରି ଝୁଲିବା ଅବସ୍ଥାରେ ସେମାନେ ଖାଦ୍ୟ ଖାଆନ୍ତି, ଏପରିକି ଛୁଆ ମଧ ଜନ୍ମ କରିପାରନ୍ତି ।

ସ୍ଲଥ୍‌ମାନଙ୍କ ଦେହର ଦୁଇଟି ବିଶେଷତ୍ୱ ରହିଛି । ଏମାନଙ୍କର ମୁଣ୍ଡ ଚାରିଆଡକୁ ଘୂରିପାରେ । ତା'ଫଳରେ ଏମାନେ ଉପରକୁ ମୁହଁ କରି ଝୁଲୁଥିବା ଅବସ୍ଥାରେ ମଧ ଦୁଇ କାନ୍ଧପଟ ଓ ତଳକୁ ସହଜରେ ଦେଖିପାରନ୍ତି । ଏହି ଶାରୀରିକ ସୁବିଧାଟି ସ୍ଲଥ୍‌କୁ ଆତ୍ମରକ୍ଷା କରିବା ପାଇଁ ସାହାଯ୍ୟ କରେ ।

ସ୍ଲଥ୍‌ର ଦେହ ଗଠନର ଦ୍ୱିତୀୟ ପ୍ରକାର ବିଶେଷତ୍ୱ ହେଲା – ତା' ଦେହ ଲୋମଗୁଡିକର ସଜ୍ଜା । ସାଧାରଣଭାବେ ସବୁ ସ୍ତନ୍ୟପାୟୀ ପଶୁଙ୍କର ଦେହର ଲୋମ ପିଠିରୁ ପେଟଆଡକୁ ସଜେଇ ହୋଇ ରହିଥାଏ । ଏହା ଫଳରେ ଦେହରେ ବର୍ଷାପାଣି ପଡିଲେ ଦେହ ଉପରୁ ସହଜରେ ନିଗିଡିଯାଏ । କିନ୍ତୁ ସ୍ଲଥ୍ ଓଲଟା ହୋଇ ଗଛ ଡାଳରୁ ଝୁଲି ରହୁଥିବାରୁ ତା'ଦେହର ରୁମଗୁଡିକ ତଳିପେଟରୁ ପିଠିଆଡକୁ ବୋହିପଡିଥାଏ ।

ସ୍ଲଥ୍‌ର ଲାଞ୍ଜ ପ୍ରାୟ ନାହିଁ କହିଲେ ଚଳେ। ଏହାର ନାକ ଚେପଟା। ଦାନ୍ତଗୁଡ଼ିକ ବଡ ବଡ ଖିଲପରି। ଗଛରୁ ଝୁଲୁଥିବା ଏହି ବିଚିତ୍ର ଜନ୍ତୁଗୁଡ଼ିକୁ ଜଙ୍ଗଲରେ ଠାବ କରିବା ସହଜ ନୁହେଁ। କାରଣ ସେମାନଙ୍କ ଦେହର ରୁମ ଉପରେ ସବୁଜ ରଙ୍ଗର ଶିଉଳି ଲାଗିଯାଇଥାଏ। ତେଣୁ ଗଛର ଘଞ୍ଚ ଡାଳପତ୍ର ଆଢୁଆଳରେ ଏମାନେ ଅତି ସହଜରେ ଲୁଚି ରହିଯାନ୍ତି।



ସ୍ଲଥ୍‌ର ଖାଦ୍ୟ ହେଲା – ଗଛର ପତ୍ର, ଫୁଲ, ଫଳ ଓ କଅଁଳ ଡାଳ। ସ୍ଲଥ୍ ଦୁଇ ଜାତିର। ଗୋଟିଏ ଜାତିର ସ୍ଲଥ୍‌ଙ୍କ ଆଗ ଗୋଡରେ ଦୁଇଟି ମାତ୍ର ଆଙ୍ଗୁଠି ଥାଏ। ଏମାନଙ୍କୁ ଉନାଉ କୁହାଯାଏ। ଅନ୍ୟ ଜାତିର ସ୍ଲଥ୍‌ଙ୍କ ଆଗ ପାଦରେ ତିନୋଟି ଲେଖାଁଏ ଆଙ୍ଗୁଠି ଥାଏ। ସେମାନଙ୍କୁ ଆୟ ବା ତିନିଆଙ୍ଗୁଠିଆ ସ୍ଲଥ୍ କୁହାଯାଏ।

—

# ଶିଙ୍ଗ ଥିବା ଝିଟିପିଟି

ଉତ୍ତର ଆମେରିକା ଓ ମେକ୍‌ସିକୋର ବିଭିନ୍ନ ଅଞ୍ଚଳରେ ଝିଟିପିଟି ଜାତିର ଏକପ୍ରକାର ପ୍ରାଣୀ ଦେଖାଯା'ନ୍ତି। ଏମାନଙ୍କର ମୁଣ୍ଡ ଓ ଦେହରେ ଶିଙ୍ଗ ଭଳି କଣ୍ଟାସବୁ ବାହାରିଥାଏ। ତେଣୁ ଏମାନଙ୍କୁ ଶିଙ୍ଗ ଥିବା ଝିଟିପିଟି ବା ଶିଙ୍ଗ ଥିବା ବେଙ୍ଗ କୁହାଯାଏ। ଏହି ଜୀବଟିର ଅନ୍ୟ ଏକ ବିଶେଷତ୍ୱ ଅଛି ଶତ୍ରୁଠାରୁ ଆତ୍ମରକ୍ଷା ପାଇଁ ବେଳେବେଳେ ସେ ଏକ ଅଦ୍ଭୁତ ଫନ୍ଦି କରେ। ସେ ତା'ର ଶତ୍ରୁକୁ ଦେଖିଲେ ତା ଆଖିରୁ ରକ୍ତ ପିଚ୍‌କିପଡ଼େ। ଶତ୍ରୁର ଆଖିରେ ସେ ରକ୍ତ ପଡ଼ିଲେ ଖୁବ୍ ପୋଡ଼ାଜଳା ହୁଏ। ଫଳରେ ଶତ୍ରୁ ତାକୁ ଛାଡ଼ି ଚାଲିଯାଏ। ଜନ୍ତୁଟିର ଏହି ଅଦ୍ଭୁତ ବ୍ୟବହାରରୁ ବୈଜ୍ଞାନିକମାନେ ଅନୁସନ୍ଧାନ କରି ଜାଣିପାରିଛନ୍ତି ଯେ ଜନ୍ତୁଟି ଭୟରେ ବିଚଳିତ ହୋଇପଡ଼ିଲା ବେଳେ ତା ମସ୍ତିଷ୍କରେ ରକ୍ତଚାପ ବହୁତ ବଢ଼ିଯାଏ। ତା'ଫଳରେ ତା' ଆଖିର କେତେକ କ୍ଷୁଦ୍ର କ୍ଷୁଦ୍ର ରକ୍ତନଳୀ ହଠାତ୍ ଫାଟିଯାଏ। ସେଥିରୁ ବାହାରୁଥିବା ରକ୍ତ ବେଶ୍ କିଛି ଦୂରକୁ ଛିଟିକିପଡ଼େ। ଏହି ବ୍ୟବସ୍ଥା ଜନ୍ତୁର ଆତ୍ମରକ୍ଷା ପାଇଁ ସାହାଯ୍ୟ କରେ।

୧୪ଟି ଜାତିର ଶିଙ୍ଗ ଥିବା ଝିଟିପିଟି ଅଛନ୍ତି। ଏମାନଙ୍କ ଦେହ ଓ ମୁଣ୍ଡ ଉପରେ ଥିବା ଶିଙ୍ଗ ବା କଣ୍ଟାଗୁଡ଼ିକ ହିଁ ଏ ଜାତିର ଜୀବଙ୍କ ବିଶେଷତ୍ୱ।

ଏମାନେ ସାଧାରଣଭାବେ ଲମ୍ବରେ ୭.୫ରୁ ୧୨.୫ ସେଣ୍ଟିମିଟର ପର୍ଯ୍ୟନ୍ତ ବଢ଼ିପାରନ୍ତି। ଏମାନେ ମରୁଭୂମି ବା ଶୁଷ୍କ ବାଲୁକା ଅଞ୍ଚଳରେ ବାସ କରନ୍ତି। ଏମାନଙ୍କର ଖାଦ୍ୟ ହେଲା ଜନ୍ଦା, ପିମ୍ପୁଡ଼ି ଓ ଅନ୍ୟାନ୍ୟ କୀଟପତଙ୍ଗ।

ପଥର ଫାଟରେ ବା ଛୋଟ ଛୋଟ ଗାତରେ ଏମାନେ ବାସକରନ୍ତି। ଫାଟ ଭିତରେ ପଶିଥିଲାବେଳେ ଏମାନଙ୍କର ମୁଣ୍ଡ ଅଳ୍ପ ପଦାକୁ ଦିଶୁଥାଏ।

କେତେ ଲୋକ ଏ ଝିଟିପିଟିଙ୍କୁ ପୋଷିବାକୁ ଭଲପା'ନ୍ତି। କିନ୍ତୁ ଯନ୍ତାରେ ପୂରାଇ ରଖିଲେ ଏମାନେ ଖୁବ୍‌ଶୀଘ୍ର ମରିଯାଆନ୍ତି।

—

# ଭୟଙ୍କର ଜୀବ ସମୁଦ୍ର ବିରୁଡ଼ି

ସମୁଦ୍ର ଜଳରେ ଅନେକ ପ୍ରକାର ଭୟଙ୍କର ଜୀବ ରହନ୍ତି। ଏମାନଙ୍କ ଭିତରେ ଏକ ପ୍ରକାର ଜେଲି ମାଛ ଅଛନ୍ତି, ଯେଉଁମାନଙ୍କୁ ସମୁଦ୍ର ବିରୁଡ଼ି ବା ଚିରୋନେକ୍ସ-ଫ୍ଲେକେରି କୁହାଯାଏ। ଏମାନଙ୍କ ଦେହରୁ ଶୁଣ୍ଢଭଳି ଜିନିଷସବୁ ଝୁଲୁଥାଏ। ଏହି ଶୁଣ୍ଢ ଗୁଡ଼ିକରେ ହଜାର ହଜାର ସୂକ୍ଷ୍ମ ଜୀବକୋଷ ରହିଥାଏ। ଏଥିରେ ନାଗସାପର ବିଷ ଭଳି କଡା ବିଷ ଭର୍ତ୍ତି ହୋଇ ରହିଥାଏ। କୌଣସି ପ୍ରାଣୀ ଏହି ଶୁଣ୍ଢଗୁଡିକ ସହିତ ଘସି ହୋଇ ଯିବା ମାତ୍ରେ ତା ଦେହରେ ସମୁଦ୍ର ବିରୁଡିର ବିଷ ଚରିଯାଏ ଓ ପ୍ରାଣୀଟି ମାତ୍ର ପାଞ୍ଚ ମିନିଟ୍ ଭିତରେ ମରିଯାଏ।



ଅଷ୍ଟ୍ରେଲିଆ ମହାଦେଶର ଉତ୍ତର ପଟର ସମୁଦ୍ର ଜଳରେ ଏଇ ସମୁଦ୍ର ବିରୁଡିମାନେ ବହୁ ସଂଖ୍ୟାରେ ଦେଖାଯା'ନ୍ତି। ଏହାଛଡା ଆଟ୍‌ଲାଣ୍ଟିକ୍ ମହାସାଗରର ଯୁକ୍ତରାଷ୍ଟ୍ର ଆମେରିକା ଉପକୂଳ ଅଞ୍ଚଳ, ନର୍ଥ କ୍ୟାରେଲିନାଠାରୁ

ଫ୍ଲରିଡା ପର୍ଯ୍ୟନ୍ତ ଅଞ୍ଚଳରେ ମଧ୍ୟ ଏମାନେ ଦେଖାଯା'ନ୍ତି। ପଶ୍ଚିମ ଆଫ୍ରିକା ଉପକୂଳ ଓ ଭାରତ ମହାସାଗରରେ ମଧ୍ୟ ଏମାନଙ୍କୁ ଠାବ କରାଯାଇଛି।

ସମୁଦ୍ର ବିରୁଡ଼ିର ରଙ୍ଗ ପାଣିର ରଙ୍ଗ ଭଳି। ଜେଲିମାଛ ଜାତିର ଏହି ଜୀବର ଶରୀର ଗଠନରେ ଶତକଡା ୯୫ ଭାଗ ଜଳ ଥାଏ। ଅଗଭୀର ଓ ଉଷ୍ଣ ସମୁଦ୍ର ଜଳରେ ଭାସୁଥିଲା ବେଳେ ଏମାନେ ସହଜରେ ଦେଖାଯା'ନ୍ତି ନାହିଁ।

ସମୁଦ୍ର ପହଁରାଳିଙ୍କ ପାଇଁ ଏହା ବିପଦର କାରଣ ହୁଏ। ଆକୃତିରେ ସମୁଦ୍ର ବିରୁଡି ଦେଖିବାକୁ ଘଣ୍ଟି ଭଳି। ଏହାର ଶୁଣ୍ଢଗୁଡିକ ଲାଲ ବା ନୀଳ ରଙ୍ଗର। ଏମାନେ ଲମ୍ବାରେ ୧୦ ସେ. ମିଟର ଓ ଚଉଡାରେ ୪ରୁ ୨୦ ସେ.ମି. ପର୍ଯ୍ୟନ୍ତ ବଢନ୍ତି। ସମୁଦ୍ର ବିରୁଡିର ଶୁଣ୍ଢ ସଂଖ୍ୟା ପ୍ରାୟ ୫୦ ଓ ପ୍ରତି ଶୁଣ୍ଢରେ ହଜାର ହଜାର ବିଷାକ୍ତ ଜୀବକୋଷ ନାହୁଡ ଭଳି ଗୁଛିହୋଇ ରହିଥାଏ। ଏହାଦ୍ୱାରା ସେ ନିଜର ଆତ୍ମରକ୍ଷା କରିବା ସହିତ ଖାଦ୍ୟ ମଧ୍ୟ ସଂଗ୍ରହ କରେ।

୬

## ପର୍‌ପଏ – କଥାକୁହା ସାମୁଦ୍ରିକ ପ୍ରାଣୀ

ସମୁଦ୍ରରେ ବାସକରୁଥିବା ପ୍ରାଣୀଙ୍କ ମଧ୍ୟରେ ପର୍‌ପଏ ଗୋଟିଏ ଅଦ୍ଭୁତ ପ୍ରାଣୀ। ଏହାର କେତେକ ବ୍ୟବହାର ମଣିଷ ଭଳି। ମଣିଷର ଅନେକ ବ୍ୟବହାର ମଧ୍ୟ ଏ ଅନୁସରଣ କରିପାରେ। ଏହା ଏକ ଚତୁର ପ୍ରାଣୀ। ମଣିଷର ସ୍ୱରକୁ ମଧ୍ୟ ଏ ଅନୁକରଣ କରିପାରେ। ଆମେରିକାର ଫ୍ଲରିଡା ସାମୁଦ୍ରିକ ଜୀବଶାଳାରେ ଗୋଟିଏ ପୋଷା ପର୍‌ପଏ ଅଛି। ଜୀବଶାଳାକୁ ଆସୁଥିବା ଦର୍ଶକମାନଙ୍କୁ ଅନୁକରଣ କରି ସେ ହୋ ହୋ ହୋଇ ହସିପାରେ ପୁଣି କାନ୍ଦି ମଧ୍ୟ ପାରେ। ଏହାର ବାକ୍‌ଯନ୍ତ୍ରର ଗଠନ ଏପରି ଯେ ତା ସାହାଯ୍ୟରେ ସେ ମଣିଷର କଥାକୁ ଅନେକାଂଶରେ ଅନୁକରଣ କରିପାରେ। ଏଥିପାଇଁ ଅବଶ୍ୟ ତାକୁ ତାଲିମ ଦିଆଯାଇଥାଏ।

ପରପଏ ଛୁଆ ଜନ୍ମ କରେ ଓ ତାକୁ ସ୍ତନ୍ୟପାନ କରାଏ। ଏହାର ଅନ୍ୟଏକ ବିଶେଷତ୍ୱ ହେଲା – ମାଛମାନଙ୍କ ପରି ଏହାର ଗାଲିସି ନାହିଁ; ଶ୍ୱାସ ପ୍ରଶ୍ୱାସ ପାଇଁ ସେ ଫୁସ୍‌ଫୁସ୍ ଉପରେ ନିର୍ଭର କରେ। ନିଶ୍ୱାସ ନେବାପାଇଁ ଏହାର ନାକ ଅଛି। ସେଇଟି ଗୋଟିଏ ଛୋଟ କଣା ଭଳି। ପାଣି ଉପରକୁ ମୁହଁ ଟେକି ଏହି କଣାବାଟେ ସେ ନିଶ୍ୱାସ ମାରେ।

ଏହାର ଲମ୍ବ ହାରାହାରି ଦୁଇ ମିଟର। ଦାନ୍ତ ସଂଖ୍ୟା ୮୦ରୁ ୧୦୦ ପର୍ଯ୍ୟନ୍ତ। ଏହାର ରଙ୍ଗ କଳା ବା ବାଦାମି। ଆଟଲାଣ୍ଟିକ୍ ଓ ପ୍ରଶାନ୍ତ ମହାସାଗରରେ ଏମାନେ ଦେଖାଯା'ନ୍ତି। ଏମାନଙ୍କୁ ତିମି ଓ ଡଲଫିନ୍ ସହିତ ଏକାଧରଣର ସ୍ତନ୍ୟପାୟୀ ଜୀବ ଭାବରେ ଗଣାଯାଏ।

ପରପଏ ଶିକାରୀମାନେ ଏହାର ମୁଣ୍ଡ ଓ ଦାନ୍ତ ମାଢିରୁ ଏକ ପ୍ରକାର ତେଲ ସଂଗ୍ରହ କରନ୍ତି। ଏହି ତେଲକୁ ଘଡ଼ି ଓ ଅନ୍ୟାନ୍ୟ ମୂଲ୍ୟବାନ୍ ଯନ୍ତ୍ରପାତିରେ ଦିଆଯିବା ତେଲ ରୂପେ ବ୍ୟବହାର କରାଯାଏ।

## ମାଛଙ୍କ ରାଜା ସାର୍କ

ବଣରେ ବାଘ ସିଂହଙ୍କ ଭଳି ସମୁଦ୍ରରେ ସବୁଠାରୁ ହିଂସ୍ର ପ୍ରାଣୀ ହେଲା ସାର୍କ ବା ମଗର। ସାର୍କ ଏକ ଜାତିର ମାଛ। ଏହା ଖୁବ୍ ଦ୍ରୁତ ବେଗରେ ପହଁରି ପାରେ। ଏମାନଙ୍କର ଆକାର ବିଭିନ୍ନ ପ୍ରକାରର। ୩୦ ସେ.ମି. ରୁ ଆରମ୍ଭ କରି ୧୩-୧୪ ମିଟର ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି।

ସାର୍କ ଲୁଣିପାଣିରେ ବାସକରେ। ଏହାର କଙ୍କାଳ ଅସ୍ଥି ପରିବର୍ତ୍ତେ ନରମ ହାଡ ଉପାସ୍ଥି ଦ୍ୱାରା ତିଆରି। ଏହାର ଚମ ଉପରେ ଖୁବ୍ ଛୋଟ ଛୋଟ କାତି ଥାଏ। ଛୁଇଁଲେ ବାଲିକାଗଜରେ ହାତ ମାରିଲା ପରି ଖଦଡା ଲାଗେ।

ସାର୍କ ଅତି ପ୍ରାଚୀନ ଯୁଗରୁ ବଞ୍ଚି ଆସିଥିବା ଏକ ଜୀବ। ପୃଥିବୀର ବିଭିନ୍ନ ସ୍ଥାନରୁ ଯେଉଁସବୁ ସାର୍କ ଜୀବାଶ୍ମ ସଂଗୃହୀତ ହୋଇଛି ସେଥିରୁ ଜଣାପଡେ ଯେ; ଅନ୍ତତଃ ୨୫ କୋଟି ବର୍ଷ ତଳେ ମଧ୍ୟ ସାର୍କମାନେ ସମୁଦ୍ରରେ ରହିଥିଲେ।

ପୃଥିବୀର ଜଳଭାଗରେ ଦେଖାଯାଉଥିବା ସମସ୍ତ ପ୍ରକାର ସାର୍କଙ୍କୁ ୨୫୦ଟି ଜାତିରେ ବିଭକ୍ତ କରାଯାଏ। ଏଥି ମଧ୍ୟରୁ ଏକ ଜାତିର ସାର୍କଙ୍କ ମୁହଁ କୁକୁର ମୁହଁ ପରି। ଏହାକୁ ଡଗ୍‌ଫିସ୍ ସାର୍କ କୁହାଯାଏ। ଏହାର ଲମ୍ବ ହାରାହାରି ଏକ ମିଟର। ଛୋଟମାଛ ଓ ଅମେରୁଦଣ୍ଡୀ ପ୍ରାଣୀ (ଜେଲିମାଛ ଇତ୍ୟାଦି)ଙ୍କୁ ଖାଇ ଏ ବଞ୍ଚେ। ସବୁଠାରୁ ବଡ ସାର୍କ ତିମିମାଛ ପରି ବଡ ହୁଅନ୍ତି। ତେଣୁ ଏମାନଙ୍କୁ ହ୍ୱେଲ୍‌ସାର୍କ କୁହାଯାଏ। ଏମାନେ ପ୍ରାୟ ୧୫ ମିଟର ଲମ୍ବ ହୁଅନ୍ତି। ଛୋଟ ସାର୍କମାନଙ୍କ ତୁଳନାରେ ଏମାନେ ଏତେ ବିପଦ୍‌ଜନକ ନୁହଁନ୍ତି।



ସାର୍କମାନେ ଯେକୌଣସି ପ୍ରାଣୀକୁ ଖାଇ ପାରନ୍ତି। ଏପରିକି ନିଜ ଜାତିର ମାଛଙ୍କୁ ମଧ୍ୟ ଖାଇଯାଆନ୍ତି। ସିଲ୍, ଡଲଫିନ୍, ବଡ ବଡ ସାମୁଦ୍ରିକ କଇଁଛକୁ ଧରି ଖାଇଯାଇ ପାରନ୍ତି। ସମୁଦ୍ରରୁ ନଈର ମୁହାଣ ବାଟେ ନଦୀ ଭିତରକୁ ଆସି ଏମାନେ କୁମ୍ଭୀର ଓ ପାଣିକୁ ପଶୁଥିବା ଗାଈ ଗୋରୁ ଘୋଡା ହାତୀ ଇତ୍ୟାଦିଙ୍କୁ ମଧ୍ୟ ଆକ୍ରମଣ କରିପାରନ୍ତି। ସମୁଦ୍ରରେ ପହଁରୁଥିବା ଲୋକମାନଙ୍କ ପାଇଁ ସାର୍କ ଏକ ଅତି ବିପଦ୍‌ଜନକ ପ୍ରାଣୀ। ଶିକାରର ସନ୍ଧାନ ପାଇଲେ ସେମାନେ ଖୁବ୍ ଦ୍ରୁତଗତିରେ ପହଁରି ତା'ପାଖରେ ପହଞ୍ଚିଯାନ୍ତି। ବେଳେବେଳେ ଏମାନେ ଜାହାଜର ପିଛା ଧରି ଗୋଡେଇବାର ଦେଖାଯାଏ। ଜାହାଜର ରୋଷଘରୁ ପକାଇଦିଆଯାଉଥିବା ଖାଦ୍ୟ ପଦାର୍ଥ ଲୋଭରେ ସାର୍କ ମାଇଲ ମାଇଲ ବାଟ ତା ପଛରେ ଯାଉଥାଏ। ଏମାନେ

ଦଳ ଗଢି ଶିକାର କରନ୍ତି। କେତେକ ସାର୍କ ଏକୁଟିଆ ଶିକାର କରୁଥିବା ମଧ୍ୟ ଦେଖାଯାଏ।

ସାର୍କମାଂସ ଖାଉଥିବା ଲୋକେ ଏହି ମାଂସକୁ ଖୁବ୍ ସୁଆଦିଆ ବୋଲି କୁହନ୍ତି। ପ୍ରତିବର୍ଷ ବହୁସଂଖ୍ୟକ ସାର୍କ ପୃଥିବୀର ବିଭିନ୍ନ ଅଞ୍ଚଳରେ ସମୁଦ୍ରରୁ ଧରାଯାନ୍ତି। ଏହାର ଚମଡା ବେଶ୍ ମୂଲ୍ୟବାନ୍। ଦାମିକା ଜୋତା, ବ୍ୟାଗ୍ ବା ବହି ବନ୍ଧେଇ ପାଇଁ ଏହି ସାର୍କ ଚମଡା ବ୍ୟବହୃତ ହୁଏ।

ମ୍ୟାକୋ ସାର୍କ ଦେଖିବାକୁ ଅତି ସୁନ୍ଦର। ଏହାର ପେଟ ତଳ ବରଫ ପରି ଧଳା। ପିଠିର ରଙ୍ଗ ଉଜ୍ଜ୍ୱଳ ନୀଳ।

## କଙ୍କଡାବିଛା

ପୃଥିବୀର କେତେକ ଦେଶରେ କଙ୍କଡାବିଛା ଦେଖାଯାନ୍ତି। କଙ୍କଡାବିଛା ଗୋଟିଏ ପତଙ୍ଗ ଜାତିର ଜୀବ। ଏମାନେ ମୁଖ୍ୟତଃ ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରେ ବାସ କରନ୍ତି। ପଥର, କାଠଗଦା ବା ମାଟିତଳେ ଅନ୍ଧାରିଆ ଜାଗା ଦେଖି ଏମାନେ ଲୁଚି ରହିଥାନ୍ତି। ଏମାନେ ଏକ ଅତି ପ୍ରାଚୀନ ଜାତୀୟ ପ୍ରାଣୀ। ଜୀବାଶ୍ମ ପରୀକ୍ଷାରୁ ଜଣାଯାଇଛି ଯେ; ଏମାନେ ପ୍ରାୟ ୪୦ କୋଟି ବର୍ଷ ତଳେ ମଧ୍ୟ ପୃଥିବୀରେ ବାସ କରୁଥିଲେ। ବର୍ତ୍ତମାନ ଯାଏଁ ଅନ୍ତତଃ ୬୦୦ ଜାତିର କଙ୍କଡାବିଛାଙ୍କୁ ଚିହ୍ନଟ କରାଯାଇପାରିଚି।

କଙ୍କଡାବିଛା ଗୋଟେ ଭୟଙ୍କର ପ୍ରାଣୀ। ଏମାନେ ଲୁଚିଛପି ରହନ୍ତି। ଘର ଭିତରେ ଅନ୍ଧାରୁଆ ଜାଗାରେ, ଜୋତା ଭିତରେ, ଶେଜ ବା କାର୍‌ପେଟ୍ ତଳେ ଏମାନେ ଲୁଚି ରହିଯାନ୍ତି। ତା’ ଉପରେ ଗୋଡ ପଡିଗଲେ ବା ଅନ୍ୟ କେଉଁପ୍ରକାରେ ଆଘାତ ପାଇଲେ ସେ ତା’ର ନାହୁଡ ବିନ୍ଧିଦିଏ। ଏଥିରୁ ବିଷ ବାହାରି ରକ୍ତରେ ମିଶିଲେ ଖୁବ୍ ଯନ୍ତ୍ରଣା ହୁଏ। ବେଳେବେଳେ ମୃତ୍ୟୁ ମଧ୍ୟ ଘଟିପାରେ। କେତେକ ଜାତିର କଙ୍କଡାବିଛାର ବିଷ ସାପ ବିଷ ପରି ଭୟଙ୍କର। ଇଜିପ୍ଟରେ ଲିଭରସ୍ ଜାତିର ଏକ ପ୍ରକାର କଙ୍କଡାବିଛା ଦେଖାଯାନ୍ତି। ଏମାନେ ଅତି ଭୟଙ୍କର। ଏହାର ବିଷ ପ୍ରଭାବରେ ମିଣିଷ

ମରିଯାନ୍ତି । ବିଷ ପ୍ରଭାବରେ ମଣିଷର ହୃତ୍‌ପିଣ୍ଡ ଓ ବକ୍ଷସ୍ଥଳର ମାଂସପେଶୀ ଅକାମି ହୋଇଯାଏ । ଯୁକ୍ତରାଷ୍ଟ୍ର ଆମେରିକା ଓ ମେକ୍‌ସିକୋରେ ମଧ୍ୟ ଏ ଜାତିର କଙ୍କଡାବିଛା ଦେଖାଯାନ୍ତି । ସେ ଦେଶରେ ସାପ କାମୁଡାଠାରୁ ବେଶୀ ଲୋକ ଏ ବିଛା କାମୁଡାରେ ମରନ୍ତି ।



କଙ୍କଡାବିଛାଗୁଡିକ ସାଧାରଣଭାବେ କଳା ବା ହଳଦିଆ ରଙ୍ଗର । ଲମ୍ବାରେ ୧.୩ରୁ ୧୭.୫ ସେ.ମିଟର ପର୍ଯ୍ୟନ୍ତ ବଢ଼ିପାରନ୍ତି । କଙ୍କଡାବିଛା ଶରୀରକୁ ମୁଣ୍ଡ ଓ ଛାତି ଏବଂ ତଳିପେଟରୁ ଲାଞ୍ଜ ଯାଏ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଲାଞ୍ଜ ଅଗରେ ନାହୁଡ ଥାଏ । ଏହାର ଗୋଡ ଛଅ ହଳ । ସେଥିଭିତରୁ ପ୍ରଥମ ହଳକ ଶୁଣ୍ଢ ଛୁରୀଭଳି କାମ କରେ । ଏଥିରେ ସେ ତା ଶତ୍ରୁକୁ ଆଘାତ କରି ଚିରିଦେଇପାରେ । ତା'ପର ଏକହଳ ଗୋଡ ଦେଖିବାକୁ ଚୂମୁଟା ପରି, ଅର୍ଥାତ୍ କଙ୍କଡାର ମୋଟା ଗୋଡ ଭଳି । ଏଥିରୁ କଙ୍କଡାବିଛାର ନାମକରଣ ହୋଇଛି । ଏଥିରେ ସେ ଶିକାରକୁ ଚାପି ଧରେ । ତା'ପର ୪ ହଳ ଗୋଡ ମଧ୍ୟ ଦେଖିବାକୁ ଛୋଟ ଛୋଟ ଶଣ୍ଢୁଆସି ଭଳି । ଏହା ଚାଲିବା ପାଇଁ ଗୋଡର କାମ କରେ ।

କଙ୍କଡାବିଛା ଏକ ନିଶାଚର ପ୍ରାଣୀ । ଏହା ରାତିରେ ଚଲାବୁଲା କରେ । ଏମାନଙ୍କର ମୁଖ୍ୟ ଖାଦ୍ୟ ହେଲା କୀଟପତଙ୍ଗ ଓ ବିଭିନ୍ନ ପ୍ରକାର ବୁଢ଼ୀଆଣି । ଛୁଆ କଙ୍କଡାବିଛାମାନେ ମାଆ ପେଟରୁ ଜନ୍ମ ହୁଅନ୍ତି । ଜନ୍ମ ହେବାପରେ

କେତେଦିନ ପର୍ଯ୍ୟନ୍ତ ସେମାନେ ମାଆ ପାଖେ ପାଖେ ଥା'ନ୍ତି । ମା'କୁ ଜାବୁଡି ଧରିବା ପାଇଁ ସେମାନେ ତାଙ୍କର ଚୁମୁଟା ଭଳି ଗୋଡକୁ ବ୍ୟବହାର କରନ୍ତି ।

କଙ୍କଡାବିଛାର ନାହୁଡଟି ଲାଞ୍ଜ ଅଗରେ ମୁନିଆଁ ଛୁଞ୍ଚିଟିଏ ଭଳି ଥାଏ । ଏହି ନାହୁଡରେ ଦୁଇଟି ବିଷଗ୍ରନ୍ଥି ଅଛି । ସେ କାହାକୁ ନାହୁଡ ମାରିଲେ ଏଥିରୁ ବିଷ ଝରି ତା'ର ଦେହରେ ପ୍ରବେଶ କରେ । କଙ୍କଡାବିଛାକୁ ମଣିଷ ଡରେ । କିନ୍ତୁ ସବୁ କଙ୍କଡାବିଛା କାମୁଡାରେ ମଣିଷ ମରେନାହିଁ । ତା'ଛଡା କଙ୍କଡାବିଛାମାନେ ମଧ୍ୟ ଡରକୁଳା ପ୍ରାଣୀ । ସେମାନେ ମଣିଷକୁ ଦେଖିଲେ ଲୁଚିଯିବାକୁ ଚେଷ୍ଟା କରନ୍ତି ।

## ଯେଉଁ ଜନ୍ତୁର ଜିଭ ତା ଦେହଠାରୁ ବଡ

ଏକ ପ୍ରକାରର ବହୁରୂପୀ ଏଣ୍ଡୁଅ ଅଛନ୍ତି, ଯେଉଁମାନଙ୍କର ଜିଭ ସେମାନଙ୍କ ଶରୀରଠାରୁ ଅଧିକ ଲମ୍ବ । ଏମାନେ ସାଧାରଣତଃ ଭାରତର ନୀଳଗିରି ଜଙ୍ଗଲରେ ଏବଂ ଆଫ୍ରିକା ଓ ମାଡାଗାସ୍କାରର ଜଙ୍ଗଲରେ ଦେଖାଯାନ୍ତି ।



ଏମାନଙ୍କ ଶରୀରର ଦୈର୍ଘ୍ୟ ପ୍ରାୟ ୪୫ ସେଣ୍ଟିମିଟର ହୋଇଥିଲାବେଳେ ଜିଭର ଦୈର୍ଘ୍ୟ ୧.୨୫ ମିଟରରୁ ୨ ମିଟର ପର୍ଯ୍ୟନ୍ତ ହୋଇଥାଏ ।

ଏ ପ୍ରକାର ବହୁରୂପୀର ଜିଭ ତା ପାଟି ଭିତରେ ମୋଡ଼ି ମାଡ଼ି ହୋଇ ରହିଥାଏ। ଏହା ଖୁବ୍ ସରୁ। ସେ ଗୋଟିଏ ଜାଗାରେ ରହି ଏହି ଲମ୍ବା ଜିଭକୁ ବ୍ୟବହାର କରି ଆଖପାଖରୁ କୀଟ ପତଙ୍ଗ ଅତି ସହଜରେ ଧରି ଖାଏ। ତା'ର ଜିଭର ଅଗରୁ ଏକ ପ୍ରକାର ଅଠାଳିଆ ରସ ଝରେ। ଏଇ ରସରେ କୀଟ ପତଙ୍ଗମାନେ ଲାଖିଯାନ୍ତି। ଏହି ଜନ୍ତୁଟି ବଡ ଅଳସୁଆ। କିନ୍ତୁ ଖାଦ୍ୟ ସଂଗ୍ରହ ପାଇଁ ସେ ଯେଉଁ ଉପାୟଟି କରେ ସେଥିରୁ ତା'ର କୌଶଳ ଜଣାପଡେ। ଅନ୍ୟାନ୍ୟ ବହୁରୂପୀଙ୍କ ପରି ଏ ଜୀବଟି ମଧ ତା'ର ଶରୀରର ରଙ୍ଗ ବଦଳାଇପାରେ।

## ଉଡିନପାରୁଥିବା ଚଢ଼େଇ

ଚଢ଼େଇର ଡେଣା ତାକୁ ଉଡିବାରେ ସାହାଯ୍ୟ କରେ। କିନ୍ତୁ ଯେଉଁ ଚଢ଼େଇ ଡେଣା ବ୍ୟବହାର ନକରି ବଞ୍ଚିପାରିବ ତା'ର ଉଡିବା ଶକ୍ତି କ୍ରମେ ହ୍ରାସପାଇଯିବ। ପୃଥିବୀର ଅନେକ ଅଞ୍ଚଳରେ ଏପରି ଜାତି ଜାତି ଚଢ଼େଇ ଅତି ନିରାପଦରେ ବାସକରନ୍ତି। ସେମାନେ ଶତ୍ରୁ ଆକ୍ରମଣରୁ ନିଜକୁ ରକ୍ଷା କରିବା ପାଇଁ କେବେ ଚେଷ୍ଟା କରିନାହାନ୍ତି – କାରଣ ସେମାନଙ୍କର ପ୍ରକୃତରେ ସେମିତି ଶତ୍ରୁ ପ୍ରାୟ କେହି ନାହାନ୍ତି। ସେମାନେ ସାଧାରଣଭାବେ ଭୂମି ବା ଜଳରେ ବାସ କରନ୍ତି। ହଜାର ହଜାର ବର୍ଷ ଧରି ଏହିପରି ଚଳ ପ୍ରଚଳ ହେବା ଫଳରେ ସେମାନଙ୍କର ଡେଣା ଉଡିବାଶକ୍ତି ହରାଇଥାନ୍ତି।

ଏଭଳି ପକ୍ଷୀମାନଙ୍କ ଭିତରେ ଆଣ୍ଟାର୍କାଟିକା ମହାଦେଶର ପେଙ୍ଗୁଇନ୍ ପ୍ରସିଦ୍ଧ। ଏମାନେ ଡେଣାକୁ ଆହୁଲା ଭଳି ବ୍ୟବହାର କରନ୍ତି। ଖାଦ୍ୟ ସଂଗ୍ରହ ପାଇଁ ସମୁଦ୍ର ପାଣିରେ ଏମାନେ ବେଶ୍ ଭଲଭାବେ ପହଁରିପାରନ୍ତି ଓ ଅଣ୍ଡାଦେବାପାଇଁ ସ୍ଥଳଭାଗକୁ ଆସନ୍ତି। ଚାଲିଲାବେଳେ ଏମାନଙ୍କର ଡେଣା ଦୁଇଟି କାନ୍ଧ ପାଖରୁ ଦୁଇଟି ହାତ ପରି ଝୁଲିପଡିଥାଏ। ବିପଦ ପଡିଲେ ଏମାନେ ଉଡି ନଯାଇ ଦୌଡିପଳାନ୍ତି।

ନିଉଜିଲ୍ୟାଣ୍ଡର କ୍ୟୁଇ ଏକ ନିଶାଚର ପକ୍ଷୀ। ସେ ନିଜର ଖାଦ୍ୟ ସଂଗ୍ରହ ପାଇଁ ମାଟି ଉପରେ ଖାଦ୍ୟର ବାସ୍ନା ବାରି ବାରି ଚଳପ୍ରଚଳ ହୁଏ। ବହୁକାଳ ଏହିପରି କରିବା ଫଳରେ ସେ ତା'ର ଡେଣାର ବ୍ୟବହାର କ୍ଷମତା ହରାଇ ବସିଚି। ଖାଦ୍ୟ ଅନ୍ୱେଷଣ ପାଇଁ ଦୃଷ୍ଟିଶକ୍ତି ପରିବର୍ତ୍ତେ ନାକର ବାସନା ବାରିବା ଶକ୍ତି ବ୍ୟବହାର କରିବା ଫଳରେ ତା'ର ଦୃଷ୍ଟିଶକ୍ତିର ମଧ ହ୍ରାସଘଟିଛି। ଏହାର ଡେଣାଗୁଡିକ ଅତି ସାନ ସାନ। କାଳକ୍ରମେ ପରସବୁ ରୂପ ବଦଳାଇ ରୁମରେ ପରିଣତ ହୋଇଯାଇଛି।




ଆଫ୍ରିକାର ଓଟପକ୍ଷୀ ଆଉ ଏକ ପ୍ରକାର ଉଡିନପାରୁଥିବା ଚଢ଼େଇ। ଏମାନେ ସାଧାରଣତଃ ମରୁଭୂମି ଅଞ୍ଚଳରେ ବାସ କରନ୍ତି। ଏଗୁଡିକ ଦେଖିବାକୁ ଖୁବ୍ ବଡ ବଡ। ସାଧାରଣ ଉଚ୍ଚତା ୨.୫ ମିଟର। ମାଟି ଉପରେ ଏହା ଖୁବ୍ ବେଗରେ ଦୌଡିପାରେ। ଏହାର ଗତି ଘଣ୍ଟାକୁ ହାରହାରି ୬୦ କିଲୋମିଟର। ଗୋଟିଏ ଖେପାରେ ସେ ପ୍ରାୟ ୫ ମିଟର ଦୂରତା ଅତିକ୍ରମ କରିପାରେ।

ଅଷ୍ଟ୍ରେଲିଆର ଏମୁ ଆଉ ଏକ ଜାତିର ଉଡିନପାରୁଥିବା ଚଢ଼େଇ। ଆକାର ଦୃଷ୍ଟିରୁ ଓଟପକ୍ଷୀ ତଳକୁ ଏମୁର ସ୍ଥାନ।

ଦକ୍ଷିଣ ଆମେରିକାର ରିହା ମଧ୍ୟ ଏକ ଉଡିପାରୁନଥିବା ଚଢ଼େଇ। ଏମାନଙ୍କର ପରଗୁଡିକ ଖୁବ୍ ସୁନ୍ଦର। ତେଣୁ ପକ୍ଷୀପର ସଂଗ୍ରହକାରୀଙ୍କ ହାତରେ ଏମାନେ ବହୁସଂଖ୍ୟାରେ ବଧ ହୁଅନ୍ତି। ଏମାନଙ୍କ ପରକୁ ଟୋପି ଓ ପଙ୍ଖା ତିଆରି କରିବାରେ ବ୍ୟବହାର କରାଯାଏ। ଡେଣା ନଥିବା ସବୁଠାରୁ ଭୟଙ୍କର ଚଢ଼େଇ ହେଉଚି କ୍ୟାସୋଓ୍ୟାରୀ। ଏମାନେ ଇଣ୍ଡୋନେସିଆ, ନିଉଗିନି ଓ ଉତ୍ତର ଅଷ୍ଟ୍ରେଲିଆର ଜଙ୍ଗଲରେ ବାସ କରନ୍ତି। ଆକ୍ରମଣକାରୀ ମଣିଷ ବା ପଶୁ ସହିତ ଏମାନେ ନଖ ଓ ଥଣ୍ଟରେ ଯୁଦ୍ଧ କରିପାରନ୍ତି। ଏମାନଙ୍କର ଗୋଡ ଖୁବ୍ ଲମ୍ବ ଓ ମଜଭୁତ।

## ଯେଉଁ ପ୍ରାଣୀ ମଣିଷ ଭଳି, କିନ୍ତୁ ମଣିଷ ନୁହେଁ

ଅନେକ ଜାତିର ମାଙ୍କଡ ଅଛନ୍ତି ଯେଉଁମାନଙ୍କର ଲାଞ୍ଜ ନଥାଏ। ଏମାନଙ୍କୁ ଆନ୍ଥ୍ରୋପଏଡ୍ ଜାତୀୟ ପ୍ରାଣୀ କୁହାଯାଏ। ଏହି ଜାତିର ମାଙ୍କଡମାନେ ହେଲେ ଗରିଲା, ସିମ୍ପାଞ୍ଜି, ଓରାଂଓଟାଂ ଆଦି। ଏମାନଙ୍କର ଚେହେରା ଓ ଚାଲିଚଳନ ଅନେକାଂଶରେ ମଣିଷଙ୍କ ପରି। ତେବେ ଏମାନେ ମଣିଷ ନୁହନ୍ତି ବା ମଣିଷର ଅତି ନିକଟ ସଂପର୍କୀୟ ଜୀବ ମଧ୍ୟ ନୁହନ୍ତି। ଏହି ଜାତିର ବାନରମାନେ ଆଫ୍ରିକା ଓ ଏସିଆରେ ଦେଖାଯାଆନ୍ତି। ଆନ୍ଥ୍ରୋପଏଡ୍ ଜାତିର ବାନରମାନଙ୍କ ଭିତରେ ମଣିଷର ନିକଟତମ ସାମଞ୍ଜସ୍ୟ ଥିବା ବାନରର ନାମ ସିମ୍ପାଞ୍ଜି। ଏମାନଙ୍କ ଶରୀରର ଅସ୍ଥି ସଜ୍ଜା ଅନେକାଂଶରେ ମଣିଷ ଦେହର ଅସ୍ଥିସଜ୍ଜା ପରି। ଦାନ୍ତ ମଧ୍ୟ ସଂଖ୍ୟା ଓ ଗଠନ ଦୃଷ୍ଟିରୁ ଅନେକାଂଶରେ ମଣିଷଙ୍କ ଦାନ୍ତ ଭଳି। ମଣିଷ କପାଳର ଚର୍ମ କୁଞ୍ଚିହେବା ଭଳି ସେମାନଙ୍କ କପାଳରେ ମଧ୍ୟ କୁଞ୍ଚନ ଦେଖାଯାଏ। ସେମାନଙ୍କ ମୁଣ୍ଡ ଖପୁରୀ ମଧ୍ୟ ମଣିଷର ଖପୁରୀ ଭଳି। ଏପରିକି ରକ୍ତର ରାସାୟନିକ ଉପାଦାନ ମଧ୍ୟ ଆମ ରକ୍ତ ପରି। ତେବେ ସେମାନେ ମଣିଷଙ୍କ ପରି କଥାବାର୍ତ୍ତା କରିପାରନ୍ତିନାହିଁ।

ସିମ୍ପାଞ୍ଜିମାନେ ସବୁଠାରୁ ବୁଦ୍ଧିମାନ୍ ବାନର। ଏମାନେ ମଣିଷର ଅନେକ କାମକୁ ଅନୁକରଣ କରିପାରନ୍ତି। ପରୀକ୍ଷାଗାରରେ ଏମାନଙ୍କୁ କେତେ ପ୍ରକାରର ଶବ୍ଦ ଉଚ୍ଚାରଣ ଶିକ୍ଷା ଦିଆଯାଇପାରେ, ଯାହା ଫଳରେ ଏମାନେ ନିଜର ମନୋଭାବ କେତେକାଂଶରେ ପ୍ରକାଶ କରିପାରନ୍ତି। ଏହାର ଶରୀର କଳାରଙ୍ଗର ଲୋମଦ୍ୱାରା ଆଚ୍ଛାଦିତ।



ଆଉ ଗୋଟିଏ ଜୀବ ଗରିଲା। ଏମାନେ ଉଚ୍ଚତାରେ ମଣିଷ ପରି। କିନ୍ତୁ ଏମାନଙ୍କର ଶରୀରର ଓଜନ ବହୁତ ବେଶୀ ଏବଂ ଏମାନେ ଅଧିକ ଶକ୍ତିଶାଳୀ। ଗରିଲାମାନେ ଛୋଟ ଛୋଟ ଦଳରେ ବାସକରନ୍ତି। ପ୍ରତି ଦଳରେ କୋଡିଏରୁ ତିରିଶ ପର୍ଯ୍ୟନ୍ତ ଗରିଲା ଏକାଠି ରହନ୍ତି। ଛୁଆ ଗରିଲାମାନେ ବଡ ହେବା ପର୍ଯ୍ୟନ୍ତ ବାପ ମା'ଙ୍କ ସହିତ ରହନ୍ତି। ଛୁଆମାନେ ନିରାପତ୍ତା ପାଇଁ ସାଧାରଣତଃ ଗଛ ଉପରେ ଶୁଅନ୍ତି ଓ ବୟସ୍କ ଗରିଲାମାନେ ଭୂଇଁ ଉପରେ ଶୁଆ ବସା କରନ୍ତି।

ଗରିଲାମାନେ ଶାନ୍ତିପ୍ରିୟ ଜୀବ। କିନ୍ତୁ ଏମାନେ ବିରକ୍ତ ହେଲେ ଖୁବ୍ ରାଗିଯାଆନ୍ତି ଓ ସେତେବେଳେ ସେମାନେ ନିଜ ଛାତିକୁ ଦୁଇ ହାତରେ ଖୁବ୍ ଜୋର୍‌ରେ ପିଟନ୍ତି ଓ ଡ୍ରମ୍ ପିଟିଲା ଭଳି ପାଟିରେ ଏକ ପ୍ରକାର ଶବ୍ଦ କରନ୍ତି।

ଏମାନଙ୍କର ରଙ୍ଗ କଳା । ଏମାନେ ମୁଖ୍ୟତଃ ଗଛର ଡାଳପତ୍ର ଫଳ ମୂଳ ଖାଇ ବଞ୍ଚନ୍ତି । କିନ୍ତୁ ଛୁଆ ଗରିଲାମାନେ ଫଳମୂଳ ସହିତ କୀଟ ପତଙ୍ଗ ବା ଚଢ଼େଇ ଅଣ୍ଡା ପ୍ରଭୃତି ଖାଇଥାନ୍ତି ।

ଏହି ଜୀବଗୁଡିକର ସଂଖ୍ୟା କ୍ରମଶଃ ହ୍ରାସପାଉଛି । ତେଣୁ ସେମାନଙ୍କ ସଂରକ୍ଷଣ ପାଇଁ ଏବେ ବିଭିନ୍ନ ବ୍ୟବସ୍ଥା କରାଯାଉଛି ।

## ଉଡନ୍ତା ମାଛ

ସମୁଦ୍ରରେ କେତେକ ଜାତିର ମାଛ ଦେଖାଯାନ୍ତି, ଯେଉଁମାନେ ଖଣ୍ଡିଉଡା ଦେଇ ବେଶ୍ କିଛି ବାଟ ଉଡିଯାଇପାରନ୍ତି । ଏମାନଙ୍କୁ ଉଡନ୍ତା ମାଛ କୁହାଯାଏ । ମାତ୍ର ଚଢେଇମାନଙ୍କ ପରି ଏମାନେ ଦୀର୍ଘ ସମୟ ଉଡିପାରନ୍ତିନାହିଁ, କାରଣ ଏମାନଙ୍କର ଡେଣାରେ ଏତେ ବଳ ନଥାଏ । କିନ୍ତୁ ଖଣ୍ଡିଉଡା ଦେବା ପୂର୍ବରୁ ପାଣି ଉପରେ କିଛି ବାଟ ବେଶ୍ ଜୋର୍‌ରେ ପହଁରିଯାଆନ୍ତି ।



ପରେ ପରେ ନିଜର ଡେଣା ଖୋଲି ପବନରେ ଗ୍ଲାଇଡର୍ ଉଡାଜାହାଜ ପରି ଉଡିପାରନ୍ତି । ଉଡିଲାବେଳେ ଏହି ଡେଣା ଖୋଲିହୋଇ ରହିଥାଏ । ସେଥିପାଇଁ ସ୍ୱତନ୍ତ୍ର ଧରଣର ମାଂସପେଶୀ ଏମାନଙ୍କର ଥାଏ । କିନ୍ତୁ ପାଣିରେ

ପଡିଲା ପରେ ଏ ଡେଣା ବୁଜିହୋଇ ସାଧାରଣ ମାଛର ଡେଣାପରି ଢାକି ହୋଇଆସେ ।

ଉଡନ୍ତା ମାଛ ବିଭିନ୍ନ ଆକାର ପ୍ରକାରର । ଏମାନେ ଲମ୍ବରେ ୫ ସେ. ମିରୁ ୪୫ ସେ. ମି ପର୍ଯ୍ୟନ୍ତ ହୋଇପାରନ୍ତି । ଏମାନେ ପବନରେ ଦେଶ୍ ଉଚ୍ଚକୁ ଉଡିପାରନ୍ତି ଓ ଥରକେ ୩୭୦ ମିଟର ଦୂରତା ପର୍ଯ୍ୟନ୍ତ ଉଡିପାରନ୍ତି । ଉଚ୍ଚକୁ ମଧ ଉଡିପାରୁଥିବା ଫଳରେ ସମୁଦ୍ର ଭିତରେ ଯାଉଥିବା ଜାହାଜର ଡେକ୍ ଉପରେ ବେଳେବେଳେ ଏମାନେ ପଡିବା ଦେଖାଯାନ୍ତି । ସମୁଦ୍ର ଢେଉ ଉପରେ ଏଇ ଉଡନ୍ତା ମାଛର ଉଡିବା ଦୃଶ୍ୟ ଖୁବ୍ ଚିତ୍ତାକର୍ଷକ। ଢେଉ ଉପରେ ପିଟିହୋଇ ଏମାନେ ଠାଆକୁ ଠାଆ ସହଜରେ ଉଡିଯାଇପାରନ୍ତି । ଉଡନ୍ତା ମାଛ ପୃଥିବୀର ସବୁ ଅଞ୍ଚଳର ସମୁଦ୍ରରେ ଦେଖାଯାନ୍ତି ।

## ଓଟପକ୍ଷୀ

ଓଟପକ୍ଷୀ ପକ୍ଷୀମାନଙ୍କ ଭିତରେ ସବୁଠାରୁ ବଡ। ଏହାର ଓଜନ ପ୍ରାୟ ୧୩୦ କିଲୋଗ୍ରାମ୍ ଓ ଉଚ୍ଚତା ପ୍ରାୟ ୫ ମିଟର ହୁଏ । ଏହାର ଡେଣା ତା'ର ଶରୀର ତୁଳନାରେ ଖୁବ୍ ସାନ । ଓଟପକ୍ଷୀ ଉଡିବା ପାଇଁ ଡେଣା ବ୍ୟବହାର କରିପାରେ ନାହିଁ– ମାତ୍ର ଦୌଡିଲା ବେଳେ ଡେଣାକୁ ମେଲାଇରଖି ଶରୀରର ଭାରସାମ୍ୟ ରକ୍ଷାକରିପାରେ । ଏହାର ଗୋଡ ଦୁଇଟି ଖୁବ୍ ଶକ୍ତିଶାଳୀ ଓ ଲମ୍ବା । ଏହାର ପାଦରେ ମାତ୍ର ଦୁଇଟି ଆଙ୍ଗୁଠି ଥାଏ । ବେକ ଖୁବ୍ ଲମ୍ବା । ମୁଣ୍ଡ ଓ ବେକରେ ରୁମ ଥାଏ । ପୁରୁଷ ଓଟପକ୍ଷୀର ପରଗୁଡିକ କଳା ବା ବାଦାମିରଙ୍ଗର, କିନ୍ତୁ ପାଦର ରଙ୍ଗ ଧଳା । ମାଈଓଟପକ୍ଷୀର ପର ଧୂଷରବର୍ଣ୍ଣ ଓ ଅପେକ୍ଷାକୃତ ସାନ ।

ଓଟପକ୍ଷୀର ଅଣ୍ଡାଗୁଡିକ ଖୁବ୍ ବଡ ଆକାରର । ପ୍ରତି ଅଣ୍ଡାର ଲମ୍ବ ୧୫ ରୁ ୧୮ ସେ.ମି ଓ ଗୋଲେଇ ୧୨ ରୁ ୧୫ ସେ. ମି. । ଏମାନଙ୍କର ଅଣ୍ଡା ଉଷୁମେଇବା ପ୍ରଣାଳୀ ବିଚିତ୍ର । ସାଧାରଣତଃ ତିନି ଚାରିଟି ମାଈ ଓଟପକ୍ଷୀ ମିଳିତଭାବେ ମାଟିରେ ଗାତ ଖୋଳି ନିଜନିଜର ଅଣ୍ଡାଗୁଡିକୁ

ସେଇ ଗାତ ଭିତରେ ରଖନ୍ତି, ଏବଂ ସେଗୁଡ଼ିକୁ ସେମାନେ ପାଳି କରି ଉଷୁମାନ୍ତି। ଅଣ୍ଡା ଫୁଟିବା ବେଳ ହେଲେ ପୁରୁଷ ଓଟପକ୍ଷୀ ସେଗୁଡ଼ିକୁ ଫୁଟାଏ। ସେମାନେ ରାତି ବେଳେ ଅଣ୍ଡାଗୁଡ଼ିକୁ ଫୁଟାଇଥାନ୍ତି।

ଓଟପକ୍ଷୀର ସ୍ୱର କର୍କଶ। ବୋବେଇଲା ବେଳେ ହୁଇସିଲ୍ ମାରିଲା ଭଳି ଶୁଭେ। ପୁରୁଷ ପକ୍ଷୀର ସ୍ୱର ମାଇଲ ମାଇଲ ଦୂର ପର୍ଯ୍ୟନ୍ତ ଶୁଭେ। ଓଟପକ୍ଷୀର ପରଗୁଡ଼ିକ ଭାରି ସୁନ୍ଦର। ଏ ପରଗୁଡ଼ିକୁ ସହଜରେ ଓପାଡ଼ିଦେଇ ହୁଏ। ପର ଉପୁଡ଼ିଗଲେ ଏହାର ବିଶେଷ କ୍ଷତି ହୁଏନାହିଁ, କାରଣ ନୂଆ ପର ଖୁବ୍ ଶୀଘ୍ର ଉଠିଯାଏ।

ଓଟପକ୍ଷୀ ଖୁବ୍ ଦ୍ରୁତଗତିରେ ଦୌଡ଼ିପାରେ। ଏହାର ବେଗ ଘଣ୍ଟାକୁ ପ୍ରାୟ ୮୦ କିଲୋମିଟର। ଏହି ବେଗରେ ସେ ପ୍ରାୟ ଏକ କିଲୋମିଟର ପର୍ଯ୍ୟନ୍ତ ଅକ୍ଳେଶରେ ଦୌଡ଼ିପାରେ।



ଓଟପକ୍ଷୀ ଆଫ୍ରିକା ମହାଦେଶରେ ଦେଖାଯାନ୍ତି। ତା'ର ଖାଦ୍ୟ ଗଛର ପତ୍ର ଓ ମଞ୍ଜି, ମରୁଭୂମିର ବିଭିନ୍ନ ପ୍ରକାର କୋଳି ଇତ୍ୟାଦି। ଖାଦ୍ୟକୁ ହଜମ କରିବା ପାଇଁ ଏମାନେ ଛୋଟ ଛୋଟ ପଥର ଖଣ୍ଡ ଏପରିକି ଲୁହା ଖଣ୍ଡମାନ ମଧ୍ୟ ଗିଳିଦିଅନ୍ତି।

# ଲକ୍ଷ୍ୟଭେଦୀ ମାଛ

ପୃଥିବୀରେ ପ୍ରାୟ ୨୫ ହଜାର ଜାତିର ମାଛ ଅଛନ୍ତି। ଏମାନେ ମେରୁଦଣ୍ଡୀ ପ୍ରାଣୀ। ପ୍ରତ୍ୟେକ ଜାତିର ମାଛ ନିଜ ନିଜ ଉପାୟରେ ଖାଦ୍ୟ ସଂଗ୍ରହ କରନ୍ତି। ଲକ୍ଷ୍ୟଭେଦୀ ମାଛର ଖାଦ୍ୟ ସଂଗ୍ରହ ପ୍ରଣାଳୀ ବିଚିତ୍ର। ମୁହଁରୁ ପାଣି ଫୋପାଡି ପାଣିରେ ଉଡୁଥିବା କୀଟ ପତଙ୍ଗଙ୍କୁ ସେ ତଳକୁ ଖସାଇଦେଇପାରେ। ପାଣିକୁ ଗୁଳି ଭଳି ସେ ଉପରକୁ ଛାଡେ। ପୋଖରୀ ବା ନଈକୂଳରେ ଥିବା ବୁଦା ଉପରେ ବସୁଥିବା



କୀଟ ପତଙ୍ଗମାନେ ତା'ର ଶିକାର ହୁଅନ୍ତି। ଏକ ମିଟର ଦୂରରେ ବସିଥିବା ଶିକାରକୁ ସେ ସହଜରେ ଆକ୍ରମଣ କରିପାରେ। ଆକ୍ରମଣ ଯୋଗୁଁ ପତଙ୍ଗଟି ତଳକୁ ଖସିପଡିବା ମାତ୍ରେ ସେ ତା'ଉପରକୁ ଝାମ୍ପିପଡି ତାକୁ ଧରି ଖାଏ। ଏଇ ମାଛର ଲକ୍ଷ୍ୟଭେଦ ଶକ୍ତି ଅତି ତୀକ୍ଷ୍ଣ।

ଲକ୍ଷ୍ୟଭେଦୀ ମାଛମାନେ ସାଧାରଣଭାବେ ମଧୁର ଜଳରେ ବାସ କରନ୍ତି। ଭାରତ ଓ ଇଣ୍ଡୋନେସିଆରେ ଏମାନେ ଦେଖାଯାନ୍ତି। ଏ ଜାତିର ମାଛ ସମୁଦ୍ରରେ ମଧ୍ୟ ଥାଆନ୍ତି। ଏମାନଙ୍କର ଲମ୍ବ ପ୍ରାୟ ୧୮ ସେ. ମି.। ଏଗୁଡ଼ିକ ପତଙ୍ଗଭୋଜୀ ମାଛ।

ପାଟିରୁ ପାଣିର ଗୁଳି ବାହାର କରିବା ପାଇଁ ଏ ମାଛର ତାଳୁରେ ଏକ ଲମ୍ବା ନଳୀ ଅଛି। ମାଛ ଗାଲି ଭିତରେ ପାଣି ଭର୍ତ୍ତିକରି ଚାପିଦେବାମାତ୍ରେ ଏଇ ନଳୀବାଟେ ପାଣି ବାହାରକୁ ପିଚ୍‌କିପଡେ। ନଳୀକୁ ଜିଭଦ୍ୱାରା ଚାପି ଚାପି ସେ ପାଣିକୁ ଗୁଳି ଭଳି ବାହାରକୁ ଫୋପାଡିଥାଏ।

## ସ୍କଙ୍କ୍

ଆତ୍ମରକ୍ଷା ପାଇଁ ପ୍ରାଣୀମାନେ ନାନା ଉପାୟ ଅବଲମ୍ବନ କରିଥାନ୍ତି। ସ୍କଙ୍କ୍ ନାମକ ଜୀବ ନିଜ ଦେହରୁ ଏକ ପ୍ରକାର ଦୁର୍ଗନ୍ଧ ନିର୍ଗତକରି ଶତ୍ରୁକୁ ବିମୁଖ କରନ୍ତି ଓ ଏହି ଭାବରେ ନିଜର ଜୀବନ ରକ୍ଷାକରିପାରନ୍ତି।

ସ୍କଙ୍କ୍ ସାଧାରଣତଃ ଆମେରିକା, କାନାଡା ଓ ମେକ୍‌ସିକୋରେ ଦେଖାଯାଆନ୍ତି। ଏମାନେ ମାଂସଭୋଜୀ ପ୍ରାଣୀ। ସ୍କଙ୍କ୍ ଦେଖିବାକୁ ଓଧ ଭଳି। ଏମାନଙ୍କର ମୁଣ୍ଡ ଓ ଦେହରେ ପଟା ପଟା ଚିହ୍ନ ଥାଏ। ଦେହର ଲମ୍ବ ୭୫ ସେ. ମି. ଓ ଲାଞ୍ଜ ୨୫ ସେ. ମି. ଲମ୍ବ। ଦେହ ଲୋମଶ ଓ ଲାଞ୍ଜର ଲୋମ ଚଅଁର ଭଳି ଖୁବ୍ ବଡ ବଡ। ଏହାର ନାକ ଗୋଜିଆ। ଗୋଟେ ଗୋଟେ ସ୍କଙ୍କ୍ ହାରାହାରି ୧୨ କେ. ଜି. ପର୍ଯ୍ୟନ୍ତ ଓଜନ ହୁଅନ୍ତି।

ସ୍କଙ୍କ୍‌ର ଲାଞ୍ଜ ପାଖରେ ଏକ ଗ୍ରନ୍ଥି ଅଛି। ଏହି ଗ୍ରନ୍ଥିରୁ ବାହାରୁଥିବା ଦୁର୍ଗନ୍ଧ ତରଳ ବସ୍ତୁକୁ ଇଚ୍ଛା କଲେ ସେ ବହୁ ଦୂରକୁ ଫୋପାଡିପାରେ। ଏହା ଫଳରେ ସ୍କଙ୍କ୍‌କୁ ଗୋଡାଉଥିବା ଶତ୍ରୁ ତା'ର ପାଖକୁ ଆସେ ନାହିଁ। ଏପରି କରିବା ପୂର୍ବରୁ ଜନ୍ତୁଟି ପ୍ରଥମେ ତା'ର ଶତ୍ରୁକୁ ଡରେଇବା ପାଇଁ ଆଉ ଏକ ଉପାୟ କରେ। ସେ ତା'ର ଆଗ ଗୋଡରେ ଠିଆହୋଇଯାଇ ଲାଞ୍ଜକୁ ଚଅଁର ପରି ବୁଲାଏ। ଶତ୍ରୁ ସେଥିରେ ଭୟଭୀତ ନହେଲେ ସେ ତା ଉପରକୁ ଶରୀରର ତରଳ ଦୁର୍ଗନ୍ଧ ପଦାର୍ଥ ବେଶ୍ ଯୋର୍‌ରେ ଫିଙ୍ଗେ।

ଆକାର ଦୃଷ୍ଟିରୁ ସ୍କଙ୍କ୍ ବହୁ ପ୍ରକାରର । କିନ୍ତୁ ସେମାନଙ୍କ ଲୋମର ରଙ୍ଗ ସାଧାରଣତଃ ଧଳା ଓ କଳା । ସ୍କଙ୍କ୍ ଏକ ନିଶାଚର ଜୀବ । ଏମାନେ ଗଛ କୋରଡରେ ବା ଭୂଇଁରେ ଗାତ କରି ରହନ୍ତି । ଏମାନଙ୍କର ଖାଦ୍ୟ ହେଲା କୀଟ ପତଙ୍ଗ, ମୂଷା, ଗୁଣ୍ଡୁଚି ମୂଷା, ଚଢ଼େଇ ଓ ସେମାନଙ୍କ ଅଣ୍ଡା ।



ମାଈସ୍କଙ୍କ୍ ଥରକେ ଦୁଇରୁ ଦଶଟି ପର୍ଯ୍ୟନ୍ତ ଛୁଆ ଦେଇଥାଏ । ଏମାନେ ବିରାଡି ପରି ପୋଷା ମାନିଯାଇପାରନ୍ତି । ଏମାନଙ୍କ ଲାଞ୍ଜରୁ ନିର୍ଗତ ଦୁର୍ଗନ୍ଧ ତରଳ ବସ୍ତୁରୁ ଖୁବ୍ ଚମତ୍କାର ଅତର ତିଆରି କରାଯାଇଥାଏ । କେତେ ଜାତିର ଲୋକ ସ୍କଙ୍କ୍ ମାଂସ ମଧ ଖାଆନ୍ତି ।

## ସମୁଦ୍ର ଗାଈ

ସମୁଦ୍ର ଗାଈ ପାଣି ତଳେ ଦଳ ଦଳ ହୋଇ ବାସକରନ୍ତି । ଏମାନେ ମେରୁଦଣ୍ଡୀ ପ୍ରାଣୀ । ଏମାନଙ୍କ ଆକୃତି ପ୍ରକୃତି ଦେଖି ଏମାନଙ୍କୁ ତିମି ମାଛ ସହିତ ତୁଳନା କରାଯାଇପାରେ । ଏହାର ଲାଞ୍ଜ ତିମି ମାଛର

ଲାଞ୍ଜ ପରି ବଡ ଓ ଚଟକା। ଏହାର ଆଗ ଗୋଡ ଦୁଇଟା ଆହୁଲା ଆକୃତିର। ଏମାନଙ୍କ ଦେହରେ ଲୋମ ନଥାଏ। ତିମିମାନେ ସାଧାରଣତଃ ମାଂସାଶୀ। କିନ୍ତୁ ସମୁଦ୍ର ଗାଈ ଏକ ନିରାମିଷାଶୀ ପ୍ରାଣୀ। ଏହାର ପ୍ରଧାନ ଖାଦ୍ୟ ସାମୁଦ୍ରିକ ତୃଣ।



ସମୁଦ୍ର ଗାଈ ଚାରି ଜାତିର। ସେଥିଭିତରୁ ଡୁଗଙ୍ଗ୍ ପ୍ରଧାନ। ଅନ୍ୟ ତିନି ଜାତିର ସମୁଦ୍ର ଗାଈଙ୍କୁ ମାନାଟିଜ୍ କୁହାଯାଏ। ଡୁଗଙ୍ଗର ଲାଞ୍ଜରେ ଏକ ପ୍ରକାର ଚିହ୍ନ ଥାଏ। ମାନାଟିଜ୍‌ଙ୍କର ଏପ୍ରକାର ଚିହ୍ନ ନଥାଏ। ତା'ଛଡା ମାନାଟିଜ୍‌ଙ୍କ ଲାଞ୍ଜର ଆକୃତି ଆହୁଲା ପରି।

ଡୁଗଙ୍ଗ୍ ଜାତିର ସମୁଦ୍ର ଗାଈମାନେ ଭାରତ ମହାସାଗରରେ ଦେଖାଯାଆନ୍ତି। ଅଷ୍ଟ୍ରେଲିଆର ଉତ୍ତର ଉପକୂଳରେ ମଧ୍ୟ ଏମାନଙ୍କୁ ଠାବ କରାଯାଇଛି। ଏହାର ଶରୀରର ଦୈର୍ଘ୍ୟ ପ୍ରାୟ ୩ ମିଟର। ମାନାଟିଜ୍ ଜାତିର ସମୁଦ୍ର ଗାଈମାନେ ୫ ରୁ ୬ ମିଟର ଲମ୍ବ ଓ ୨୫୦ ରୁ ୩୦୦ କେ.ଜି ଓଜନର ହୋଇଥାନ୍ତି। ଏମାନଙ୍କର ଲାଞ୍ଜ ମାଛ ଲାଞ୍ଜ ପରି ଓ ମୁହଁ ମଣିଷ ମୁହଁପରି। ଏମାନଙ୍କୁ ଦେଖିଲେ ଅନେକ ସମୟରେ ପରୀ କାହାଣୀର ଜଳକନ୍ୟାର ଧାରଣା ହୁଏ। ଏମାନେ ସ୍ତନ୍ୟପାୟୀ

ପ୍ରାଣୀ। ଏମାନଙ୍କୁ ନେଇ ଅନେକ କିମ୍ବଦନ୍ତୀ ଓ କାହାଣୀ ରହିଚି। ମାନାଟିକ୍ସ ଜାତୀୟ ସମୁଦ୍ର ଗାଈ ସାଧାରଣତଃ ଉତ୍ତର ଓ ଦକ୍ଷିଣ ଆମେରିକା ଓ ପଶ୍ଚିମ ଆଫ୍ରିକା ପାଖ ସମୁଦ୍ରରେ ଦେଖାଯାନ୍ତି।

ଡୁଗଙ୍ଗ୍ ଓ ମାନାଟିକ୍ସ ସମୁଦ୍ର ଗାଈଙ୍କ ଚଳିବା ପ୍ରଣାଳୀ ସମାନ ନୁହେଁ। ଡୁଗଙ୍ଗ୍ ପାଟିର ଉଭୟ ମାଢ଼ି ଦ୍ୱାରା ସାମୁଦ୍ରିକ ଘାସ ଖାଏ। କିନ୍ତୁ ମାନାଟିକ୍ସର ଉପର ମାଢ଼ି ଦୁଇଫାଳିଆ ଓ ତାକୁ ସେ କଇଁଚି ପରି ଘାସ କାଟିବାରେ ବ୍ୟବହାରକରେ। ଏମାନେ ଦିନକୁ ପ୍ରାୟ ୫୦ କେ.ଜି. କରି ଘାସ ଖାଇଥାନ୍ତି।

ଗୋରୁମାନେ ଗୋଠରେ ରହିବାପରି ସାମୁଦ୍ରିକ ଗାଈମାନେ ଦଳ ଦଳ ହୋଇ ରହନ୍ତି।

## ବୃହତ୍ତମ ସାମୁଦ୍ରିକ ପକ୍ଷୀ ଆଲବାଟ୍ରସ୍

ସାମୁଦ୍ରିକ ପକ୍ଷୀମାନଙ୍କ ଭିତରେ ଆଲବାଟ୍ରସ୍ ଆକାରରେ ସବୁଠାରୁ ବଡ। ଏହାର ଡେଣା ଲମ୍ବାଇଦେଲେ ଏମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ଦୈର୍ଘ୍ୟ ହେବ ୩.୬ ମିଟର। ଏହାର ଥଣ୍ଟ ଖୁବ୍ ଲମ୍ବା ଓ ଓଜନିଆ। ଡେଣାର ଆକାର ସରୁ ଓ ଲମ୍ବ। ଡେଣାର ଏହି ଆକାର ଯୋଗୁଁ ସେ ବହୁ ଉଚ୍ଚକୁ ଉଡିପାରେ ଓ ପବନରେ ଭାସମାନ ଅବସ୍ଥାରେ ରହିପାରେ। ତା'ର ଶରୀରର ଦୈର୍ଘ୍ୟ ପ୍ରାୟ ୧.୨ ମିଟର।

ଆଲବାଟ୍ରସ୍ ବର୍ଷକୁ ପ୍ରାୟ ଛଅ ମାସ ଏକକାଳୀନ ସମୁଦ୍ର ଉପରେ ଉଡିପାରେ। ଏହାର ପ୍ରଧାନ ଖାଦ୍ୟ ସ୍କୁଇଡ୍ ନାମକ ସାମୁଦ୍ରିକ ମାଛ। ଶୋଷ ହେଲେ ସେ ସମୁଦ୍ରରୁ ଲୁଣିପାଣି ପିଏ। ଅଣ୍ଡାଦବା ପାଇଁ ସେ କେବଳ ସ୍ଥଳଭାଗକୁ ଆସେ। ଏମାନେ ଥରକେ ଗୋଟିଏ ଅଣ୍ଡା ଦିଅନ୍ତି। ଅଣ୍ଡାର ରଙ୍ଗ ଧଳା। ଉଭୟ ପୁରୁଷ ଓ ମାଈ ପକ୍ଷୀ ଅଣ୍ଡାକୁ ଉଷୁମାନ୍ତି ଓ ଛୁଆ ଫୁଟିଲେ ତା'ର ଯତ୍ନ ନିଅନ୍ତି। ଛୁଆଟି ବଢ଼ି ଉଡିଶିଖିବାକୁ ୩ ମାସରୁ ୧୦ ମାସ ପର୍ଯ୍ୟନ୍ତ ସମୟ ଲାଗେ। ଉଡିଶିଖିଲାପରେ ସମୁଦ୍ରରେ ମାଛ ଶିକାର କରିବାଠାରୁ ଆରମ୍ଭକରି ଏ ବିଶାଳ ସମୁଦ୍ରର ବିଭିନ୍ନ

ଅଂଶକୁ ଚିହ୍ନି ଜାଣିବା ପାଇଁ ତାକୁ ୫ ବର୍ଷରୁ ୧୦ ବର୍ଷ ପର୍ଯ୍ୟନ୍ତ ସମୟ ଲାଗେ।

ଆଲବାଟ୍ରସ୍ ଏକ ଦୀର୍ଘଜୀବୀ ପକ୍ଷୀ। ଏମାନେ ମୁଖ୍ୟତଃ ବିଷୁବରେଖାର ଦକ୍ଷିଣାଂଶରେ ସବୁ ସାମୁଦ୍ରିକ ଅଞ୍ଚଳରେ ଦେଖାଯାନ୍ତି।



୧୨ରୁ ଅଧିକ ଜାତିର ଆଲବାଟ୍ରସ୍‌ଙ୍କୁ ଚିହ୍ନଟ କରାଯାଇଚି। ଏମାନେ ଖୁବ୍ ଭଲ ଉଡିପାରନ୍ତି। କିନ୍ତୁ ସିଧା ମାଟି ଉପରୁ ଆକାଶକୁ ଉଡିଯାଇ ପାରନ୍ତିନାହିଁ। ସେଥିପାଇଁ ତାହାକୁ ବହୁତ ବାଟ ଦୌଡିବାକୁ ପଡେ ଓ ପବନର ନିର୍ଦ୍ଦିଷ୍ଟ ଗତିର ସାହାଯ୍ୟ ନବାକୁ ହୋଇଥାଏ।

## ସମୁଦ୍ରଘୋଡା

ସମୁଦ୍ରରେ ବାସକରୁଥିବା ଏଇ ଜୀବଟିର ମୁହଁଟି ଦେଖିବାକୁ ଘୋଡାମୁଁହ ପରି। ତେଣୁ ତା'ର ନାମକରଣ କରାଯାଇଛି 'ସମୁଦ୍ରଘୋଡା'। କିନ୍ତୁ ଏହା ଏକ ମାଛଜାତୀୟ ପ୍ରାଣୀ। ଏମାନେ ଲୁଣି ପାଣିର ମାଛ। ଏହାର ଶରୀରରେ

ଶକ୍ତ ହାଡୁଆ କାତି ଥାଏ। ଲାଞ୍ଜପଟଟି ଦେଖିବାକୁ ସାପ ପରି। ଅଳ୍ପ ଗଭୀର ସମୁଦ୍ର ଜଳରେ ଥିବା ଶିଉଳି ବା ଦଳ ଭିତରେ ଏମାନେ ରହନ୍ତି।



ପୃଥିବୀରେ ପ୍ରାୟ ୫୦ ପ୍ରକାରର ସମୁଦ୍ରଘୋଡା ଦେଖାଯାଆନ୍ତି। ବିଭିନ୍ନ ଜାତିର ସମୁଦ୍ରଘୋଡାଙ୍କର ଆକୃତି ସମାନ ହେଲେ ମଧ୍ୟ ଶରୀରର ଦୈର୍ଘ୍ୟ ସମାନ ନୁହେଁ। ହାରାହାରି ୨.୫ ସେ.ମି. ରୁ ୩୦.୫ ସେ.ମି. ଲମ୍ବର ସମୁଦ୍ରଘୋଡା ଦେଖାଯାଆନ୍ତି।

ଏମାନଙ୍କର ସନ୍ତାନ ପାଳନ ପ୍ରଣାଳୀ ବିଚିତ୍ର। ମାଈ କଙ୍ଗାରୁର ପେଟତଳେ ଥିବା ଥଳୀ ପରି ପୁରୁଷ ସମୁଦ୍ରଘୋଡାର ପେଟତଳେ ଥଳୀଟିଏ ଥାଏ। ମାଈ ସମୁଦ୍ରଘୋଡା ସେଇ ଥଳୀରେ ଅଣ୍ଡା ଦିଏ ଓ ସେଗୁଡିକ ସେଇଠି ଥାଇ ଅଣ୍ଡା ଫୁଟି ଛୁଆ ହୁଅନ୍ତି। ଏଥିପାଇଁ ହାରାହାରି ୪୫ ଦିନ ଲାଗେ।

ସମୁଦ୍ରଘୋଡା ଠିଆପହଁରା ପହଁରେ। ତା'ର ମୁହଁ ସବୁବେଳେ ଘୋଡାର ମୁହଁ ଭଳି ଆଗକୁ ରହିଥାଏ। ଏହା ଏକ ପ୍ରକାର ମାଛ ହେଲେ ମଧ୍ୟ ଖାଦ୍ୟରୂପେ ବ୍ୟବହୃତ ହୁଏ ନାହିଁ।

ଏମାନେ ଗ୍ରୀଷ୍ମକାଳରେ ଦେଖାଯାନ୍ତି। ଶୀତଋତୁରେ ଏମାନେ ପାଣି ତଳେ ଲୁଚିରହନ୍ତି। ଅନ୍ୟ ମାଛମାନେ ଏମାନଙ୍କୁ ଖାଆନ୍ତି ନାହିଁ, ତେଣୁ ଏମାନଙ୍କର ଶତ୍ରୁ ଭୟ କମ୍।

## ପ୍ରବାଳ ବା ପୋହଳା

ସମୁଦ୍ରର ପାଣି ତଳେ ଏକ ପ୍ରକାର ଜୀବ ବାସକରନ୍ତି, ଯେଉଁମାନଙ୍କ ଆକାର ଦେଖିବାକୁ ଗଛ ଲତା, ଫୁଲ, ପତ୍ର ଭଳି। କିନ୍ତୁ ସେମାନେ

ଉଦ୍ଭିଦ ନୁହନ୍ତି । ଏ ଜାତିର ପ୍ରାଣୀଙ୍କୁ ପ୍ରବାଳ କୁହାଯାଏ ।

ପ୍ରବାଳର ଶରୀର ଥଲଥଲିଆ ଜେଲି ଭଳି ବେଶ୍ ନରମ । କିନ୍ତୁ ଏହାର ଏକ ଆବରଣ ଥାଏ । ଏହି ଆବରଣଟି ହାଡୁଆ ଓ ବେଶ୍ ଶକ୍ତ । ଏଇ ଶକ୍ତ ଆବରଣ ଭିତରେ ପ୍ରବାଳ ଜୀବନ ଧାରଣ କରେ । ପ୍ରବାଳ ଜୀବର ପ୍ରକୃତ ଆକାର ଗୋଟିଏ ଛୋଟ ନଳୀ ଭଳି । ଏ ନଳୀର ଗୋଟିଏ ପଟ ବନ୍ଦଥାଏ ଓ ଅନ୍ୟ ପଟେ ତା'ର ମୁହଁଥାଏ । ମୁହଁ ଚାରିପଟେ ଶୁଣ୍ଢ ଭଳି ଅଁଶୁ ଗୁଡ଼ିଏ ଥାଏ । ଏହାର ଶରୀରରୁ ଝରୁଥିବା ଚୂନଜାତୀୟ ପଦାର୍ଥରୁ ପ୍ରବାଳର ବାହାର ଆବରଣଟି ତିଆରିହୁଏ ।



ପ୍ରତ୍ୟେକ ଜାତୀୟ ପ୍ରବାଳର ବାହ୍ୟ ଆକାର ଭିନ୍ନ ଭିନ୍ନ । ପ୍ରବାଳ ନିଜର ଜୀବନଧାରଣ ପାଇଁ ପ୍ରଥମେ ସମୁଦ୍ର ପାଣି ତଳେ ଥିବା କୌଣସି ପାହାଡର ପଥରକୁ ଆଶ୍ରା କରି ଠାକିରହେ । କ୍ରମେ ସେହିଠାରେ ତା'ର ବଂଶ ବୃଦ୍ଧି ଘଟେ । ମୃତ ପ୍ରବାଳର ବାହ୍ୟ ଆବରଣକୁ ଆଶ୍ରାକରି ଅନ୍ୟ ଜୀବନ୍ତ ପ୍ରବାଳମାନେ ବଢ଼ିବାକୁ ଲାଗନ୍ତି । ଏହିପରି ସ୍ତର ସ୍ତର ହୋଇ ପ୍ରବାଳ ବଢ଼ିଚାଲେ । ଶହ ଶହ ବର୍ଷ ଧରି ଏହି ସୂକ୍ଷ୍ମ ପ୍ରାଣୀମାନେ ସ୍ତର ପରେ ସ୍ତର ଗଢ଼ିବାକୁ ଲାଗନ୍ତି । ଫଳରେ ସମୁଦ୍ର ଗର୍ଭରେ ପ୍ରବାଳ ଦ୍ୱୀପ ଗଢ଼ିଉଠେ ।

ସମୁଦ୍ରରେ ଜାହାଜର ଚଳାଚଳ ପାଇଁ ପ୍ରବାଳଦ୍ୱୀପ ବିପଦ ସୃଷ୍ଟିକରିଥାଏ । ପ୍ରବାଳ ବହୁ ରଙ୍ଗର ହୁଏ । ସମୁଦ୍ର ପାଣିରେ ଥିବା ବିଭିନ୍ନ ଖଣିଜ ଦ୍ରବ୍ୟ ଯୋଗୁଁ ପ୍ରବାଳର ରଙ୍ଗ ଭିନ୍ନ ଭିନ୍ନ ହୁଏ ।

ପ୍ରବାଳ ସାଧାରଣତଃ ଭାରତ ମହାସାଗର, ପ୍ରଶାନ୍ତ ମହାସାଗର, ଭୂମଧ୍ୟ ସାଗରର ଉଷ୍ଣ ଜଳ ଅଞ୍ଚଳରେ ଦେଖାଯାଆନ୍ତି । ଭୂମଧ୍ୟସାଗରର ଆଫ୍ରିକା ଓ ଇଟାଲି ଉପକୂଳର ପ୍ରବାଳର ରଙ୍ଗ ଲାଲ ଓ ଗୋଲାପି । ଏଗୁଡିକ ମୂଲ୍ୟବାନ୍ ପଥର ରୂପେ ଅଳଙ୍କାରରେ ବ୍ୟବହାର କରାଯାଏ । ସୁଦୂର ଅତୀତରୁ ମଣିଷ ପ୍ରବାଳକୁ ଅଳଙ୍କାର ରୂପେ ବ୍ୟବହାର କରି ଆସୁଛି ।

## ରକ୍ତଖିଆ ବାଦୁଡି

ବାଦୁଡିମାନେ ଅନେକ ଜାତିର । ସେମାନେ ନିଶାଚର ପ୍ରାଣୀ । ସନ୍ଧ୍ୟା ପରେ ବସାରୁ ଉଡିଯାଇ ଖାଦ୍ୟ ଅନ୍ୱେଷଣ କରନ୍ତି । ଏମାନଙ୍କର ମୁଖ୍ୟ ଖାଦ୍ୟ ହେଲା ଫଳ । ଚେମେଣୀ ଆଦି କେତେକ ବାଦୁଡି କୀଟ ପତଙ୍ଗ ମଧ୍ୟ ଖାଆନ୍ତି । ଅନ୍ୟ କେତେକ ଜାତିର ବାଦୁଡି ମାଛ ଖାଇବା ମଧ୍ୟ ଦେଖାଯାଇଛି । କିନ୍ତୁ ଆଉ ଜାତିଏ ବାଦୁଡି ଜୀବଜନ୍ତୁଙ୍କ ଦେହରୁ ରକ୍ତ ପିଇ ବଞ୍ଚନ୍ତି । ସେମାନଙ୍କୁ 'ଡାହାଣୀ ବାଦୁଡି' କୁହାଯାଏ । ଏମାନେ ସୁବିଧାପାଇଲେ ମଣିଷ ଦେହରୁ ମଧ୍ୟ ରକ୍ତ ପିଇଥାଆନ୍ତି ।

ଡାହାଣୀ ବାଦୁଡି ଦକ୍ଷିଣ ଆମେରିକାର ମଧ୍ୟାଞ୍ଚଳରେ ଦେଖାଯାନ୍ତି । ଏମାନଙ୍କର ଆକାର ସାଧାରଣ ବାଦୁଡି ତୁଳନାରେ ବେଶ୍ ବଡ । ଦୁଇଡେଣାର ଏମୁଣ୍ଡରୁ ସେମୁଣ୍ଡ ମାପିଲେ ହେବ ପ୍ରାୟ ୩୦ ସେ.ମି. ଓ ଦେହର ଲମ୍ବା ହରାହାରି ୧୦ ସେ.ମି. । ଏହାର ଛାମୁଦାନ୍ତ ଛୁଞ୍ଚ ପରି । ଏଥିରେ ସେ ଚମକୁ କଣା କରିଦିଏ ଓ ମୁହଁ ଲଗାଇ ରକ୍ତ ଶୋଷିନିଏ । ଚମ କଣା କଲାବେଳେ ଆହତ ପ୍ରାଣୀ ପ୍ରାୟ କିଛି ଅନୁଭବ କରିପାରେନାହିଁ । ଏହାର ଜିଭଟି ନଳୀ ଭଳି । ଏହି ନଳୀ ଦ୍ୱାରା ସେ ରକ୍ତ ଶୋଷଣ କରେ ।

ଶୋଇଥିବା ପ୍ରାଣୀ ଦେହରୁ ରକ୍ତ ଶୋଷିବା ପୂର୍ବରୁ ସେ ଆଗେ ପ୍ରାଣୀଟିର ଚମର ଗୋଟିଏ ଜାଗାକୁ ଚାଟିବାକୁ ଆରମ୍ଭକରେ । ଏଥିରେ ପ୍ରାଣୀ ଯଦି ଉଠିପଡେ ତେବେ ସେ ଉଡିପଳାଏ ।



ମଣିଷ, ଘୋଡା, ଗୋରୁ ଗାଈ, କୁକୁର, ଛେଳି, କୁକୁଡା, ସିଲ୍‌ମାଛ ପ୍ରଭୃତିଙ୍କଠାରୁ ରକ୍ତ ଶୋଷି ଡାହାଣୀ ବାଦୁଡି ବଞ୍ଚେ । ଏଇ ବାଦୁଡି କାମୁଡାରେ ମଣିଷକୁ ଜଳାତଙ୍କ ରୋଗ ହୋଇପାରେ । କାରଣ ଏଇ ବାଦୁଡି ଦେହରେ ଜଳାତଙ୍କ ଜୀବାଣୁ ଥାଆନ୍ତି । ଜଳାତଙ୍କ ଏକ ଭୟାନକ ରୋଗ । ପାଗଳା କୁକୁର କାମୁଡିଲେ ଏଇ ରୋଗ ହୋଇଥାଏ । ଦୈନିକ ହାରାହାରି ୩୦ ଗ୍ରାମ୍ ପର୍ଯ୍ୟନ୍ତ ରକ୍ତ ଏ ବାଦୁଡି ପ୍ରାଣୀମାନଙ୍କ ଦେହରୁ ଶୋଷଣ କରି ବଞ୍ଚେ ।

ବାଦୁଡିମାନେ ଅତି ପ୍ରାଚୀନ ଜୀବ । ଜୀବାଶ୍ମ ଗବେଷଣାରୁ ଜଣାଯାଏ ଯେ ଏମାନେ ପୃଥିବୀରେ ପ୍ରାୟ ୬ କୋଟି ବର୍ଷ ହେଲା ବାସକରିଆସୁଚନ୍ତି ।

## ଉଡନ୍ତା ଗୁଣ୍ଡୁଚିମୂଷା

ଗୁଣ୍ଡୁଚିମୂଷାମାନେ ପ୍ରାୟ ସବୁଦେଶରେ ଦେଖାଯାଆନ୍ତି । କିନ୍ତୁ ଅଷ୍ଟ୍ରେଲିଆ ମହାଦେଶରେ ଏମାନେ ଦେଖିବାକୁ ମିଳନ୍ତି ନାହିଁ । ଗୁଣ୍ଡୁଚିମୂଷାମାନେ ବହୁ ଜାତିର । ଗୋଟିଏ ଜାତିର ଗୁଣ୍ଡୁଚିମୂଷା ଅଛନ୍ତି, ଯେଉଁମାନେ ଆକାରରେ ବିରାଡି ଭଳି ।

ଗୁଣ୍ଡୁଚିମୂଷା ସାଧାରଣତଃ ଗଛ ବା ମାଟି ଉପରେ ରହନ୍ତି। ଉଡନ୍ତା ଗୁଣ୍ଡୁଚିମୂଷା ଏହି ପରିବାର ଅନ୍ତର୍ଗତ ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ଜୀବ। ଏମାନଙ୍କ ଆଗ ଓ ପଛ ଗୋଡ ସହିତ ପତଳା ଚମର ପରଦା ସଂଯୁକ୍ତ ହୋଇଥାଏ। ଗୋଡଗୁଡିକୁ ମେଲେଇଦେଲେ ଏହି ପରଦାଗୁଡିକ ଡେଣା ପରି ମେଲିଯାଏ। ଏହାଦ୍ୱାରା ପବନରେ ଉଡିଯିବା ପାଇଁ ସୁବିଧା ହୁଏ। ଗୋଟିଏ ଗଛରୁ ଅନ୍ୟ ଏକ ଗଛକୁ ଉଡିଯିବା ପାଇଁ ଉଡନ୍ତା ଗୁଣ୍ଡୁଚିମୂଷା ଏହି ଡେଣା ବା ଗ୍ଲାଇଡର୍‌ର ସାହାଯ୍ୟ ନିଏ। ପେଚା ବା ଅନ୍ୟ କୌଣସି ଶତ୍ରୁ ଆକ୍ରମଣ କଲେ ଏହି ଡେଣା ସାହାଯ୍ୟରେ ଜନ୍ତୁଟି ମଧ୍ୟ ଆତ୍ମରକ୍ଷା କରିପାରେ।



ଉଡନ୍ତା ଗୁଣ୍ଡୁଚିମୂଷାର ଆକାର ୮ ସେ.ମି. ରୁ ୬୦ ସେ.ମି. ପର୍ଯ୍ୟନ୍ତ ହୋଇଥିବା ଦେଖାଯାଏ। ଏମାନଙ୍କ ଦେହ ନରମ ରୁମଦ୍ୱାରା ଆଚ୍ଛାଦିତ। ଆଖିଦୁଇଟି ବେଶ୍ ବଡ ବଡ। ଏମାନେ ଖୁବ୍ ଚତୁର ଜନ୍ତୁ। ଏମାନେ ଫଳ ମୂଳ ଓ କୀଟ ପତଙ୍ଗ ଖାଇଥାନ୍ତି। ଏମାନେ ଗଛ ଉପରେ ହିଁ ଜୀବନଯାପନ କରନ୍ତି ଓ କେବେ କେମିତି ମାଟି ଉପରକୁ ଆସନ୍ତି। ଉଡନ୍ତା ଗୁଣ୍ଡୁଚିମୂଷା ସାଧାରଣ ଗୁଣ୍ଡୁଚିମୂଷାଙ୍କ ପରି ଦିବାଚର ନୁହନ୍ତି– ଏମାନେ ନିଶାଚର ଜୀବ। ପ୍ରାୟ ୬୦ ମିଟର ଦୂର ପର୍ଯ୍ୟନ୍ତ ଏମାନେ ଏକା ଡିଆଁକେ ଉଡିଯାଇପାରନ୍ତି। ସାରା ପୃଥିବୀରେ ୩୫ ଜାତିର ଉଡନ୍ତା ଗୁଣ୍ଡୁଚିମୂଷାଙ୍କୁ ଠାବ କରାଯାଇପାରିଚି।

# ଉଡନ୍ତା ସାପ

ସାପ ଉଡିପାରେ ଏ କଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ। କିନ୍ତୁ ଆମ ଭାରତବର୍ଷ ଓ ଶ୍ରୀଲଙ୍କାରେ ଏପରି ଉଡନ୍ତା ସାପ ଅଛନ୍ତି। ଦକ୍ଷିଣ ଆମେରିକା ଓ ଦକ୍ଷିଣ ଏସିଆର ଅନେକ ଅଞ୍ଚଳରେ ମଧ୍ୟ ଏପରି ସାପ ଦେଖାଯାଆନ୍ତି। ଭାରତ ଓ ଶ୍ରୀଲଙ୍କାରେ ଦେଖାଯିବା ଉଡନ୍ତା ସାପ ଦେଖିବାକୁ କଳା ବା ସବୁଜ। ଏହାର ଚମ ଉପରେ ଲାଲ ବା ହଳଦିଆ ଛାପ ମଧ୍ୟ ରହିଥାଏ।

ଉଡନ୍ତା ସାପମାନେ ଗଛ ଉପରେ ରହନ୍ତି। ଏମାନେ ମୂଷା, ବାଦୁଡି, ଚଢ଼େଇ, ଏଣ୍ଡୁଅ ବା ଅନ୍ୟାନ୍ୟ ଝିଟିପିଟି ଜାତିର ପ୍ରାଣୀମାନଙ୍କୁ ଖାଆନ୍ତି। ଏମାନେ ମନକଲେ ଗୋଟିଏ ଗଛରୁ ଅନ୍ୟ ଗଛକୁ ବା ଗଛ ଉପରୁ ତଳକୁ ଉଡିଯାଇପାରନ୍ତି। ସେଥିପାଇଁ ଏମାନଙ୍କର ଡେଣା ଦରକାର ପଡେନାହିଁ। ଏମାନେ ପ୍ରଥମେ ନିଜର ଲମ୍ବ ଦେହକୁ ଫୁଲାଇ ହାଲୁକା କରିଦିଅନ୍ତି ଓ ପରେ ପରେ ତଳପଟ କାତିଗୁଡିକ ଚିପିଦେଇ ଚେପ୍ଟା କରିଦେଇ ପାରନ୍ତି। ଫଳରେ ଏମାନଙ୍କର ଦେହ ପବନରେ ଭାସିପାରିଲାଭଳି ପଦାର୍ଥର ଆକାର ଧାରଣ କରେ ଏବଂ ଉଡିଲାବେଳେ ଏମାନେ ଗ୍ଲାଇଡର୍ ଉଡାଜାହାଜ ଭଳି ପବନରେ ଭାସିଯାଆନ୍ତି। ଏମାନଙ୍କ ଶରୀରର ଦୈର୍ଘ୍ୟ ପ୍ରାୟ ୧୦୦ ସେ.ମି.।

# ଅଜଗର ସାପ

ପୃଥିବୀରେ ନାନା ଜାତିର ସାପ ଦେଖାଯାଆନ୍ତି। ବୈଜ୍ଞାନିକମାନେ ପ୍ରାୟ ୨୪ ଶହ ପ୍ରକାରର ସାପକୁ ଠାବ କରିଛନ୍ତି। ଏମାନଙ୍କ ଭିତରୁ ମାତ୍ର ଶତକଡା ୮ ଭାଗ ସାପ ବିଷଧର। ସାପମାନେ ଜଳ, ସ୍ଥଳ ଓ ଗଛ ଉପରେ ରହନ୍ତି। ଶୀତଳ ମେରୁ ଅଞ୍ଚଳକୁ ଛାଡିଦେଲେ ପୃଥିବୀର ସବୁ ଦେଶରେ ସାପ ଦେଖାଯାଆନ୍ତି। ବିଭିନ୍ନ ଆକାରପ୍ରକାରର ସାପ ଅଛନ୍ତି। ସେମାନଙ୍କ ଭିତରେ ଅଜଗର ଆକାରରେ ଅତି ବଡ।

ଅଜଗର ଜାତିର ଗୋଟିଏ ପ୍ରକାର ସାପର ନାଁ ଆନାକୋଣ୍ଡା । ଏମାନେ ଦକ୍ଷିଣ ଆମେରିକାର ସାପ । ଗୋଟିଏ ଗୋଟିଏ ସାପ ହାରାହାରି ୧୦୦ କେ.ଜି. ବା ଏକ କ୍ୱିଣ୍ଟାଲ୍ ଓଜନର । ଲମ୍ବରେ ପ୍ରାୟ ୧୦ ମିଟର ବା ୩୩ ଫୁଟ । ଏହି ସାପ ବାର୍ହା, ହରିଣ ବା ସେହି ଆକାରର ବନ୍ୟଜନ୍ତୁମାନଙ୍କୁ ଗିଳି ଖାଇଯାଇପାରନ୍ତି । ଅତିକାୟ ଅଜଗର ଗୁଡିକର ଶିକାର ପ୍ରଣାଳୀ ବଡ ଭୟଙ୍କର । ଏମାନେ ସାଧାରଣଭାବେ ଗୋଟିଏ ସ୍ଥାନରେ ପଡିରହନ୍ତି । କିନ୍ତୁ ଆଖପାଖରେ ହରିଣ ବା ବାର୍ହାଟିଏ ଯିବାର ଦେଖିଲେ ନିଜ ଦେହକୁ ମୋଡା ମୋଡା କରି ତାପରେ ଶିକାର ଉପରକୁ କୁଦିପଡି ତାକୁ ମାଡିବସନ୍ତି । ଏହାପରେ ଶିକାରକୁ ଚିପିଦେଇ ତା'ର ହୃତ୍‌ପିଣ୍ଡ କ୍ରିୟା ବନ୍ଦକରିଦିଅନ୍ତି ।



ପ୍ରାଣୀଟି ମରିଗଲାପରେ ତାହାକୁ ଆସ୍ତେ ଆସ୍ତେ ଗୋଟା ଗିଳିପକାନ୍ତି । ଅଜଗରର ପାକସ୍ଥଳୀରୁ ଝରୁଥିବା ପାଚ଼କରସ ଖୁବ୍ ଶକ୍ତିଶାଳୀ । ସେଥିରେ ଶିକାରର ବଡ ବଡ ହାଡଗୁଡିକ ମଧ୍ୟ ହଜମ ହୋଇଯାଏ । ଖାଦ୍ୟକୁ ହଜମ କରିବା ପାଇଁ ଅଜଗରକୁ ଅବଶ୍ୟ ବେଶ୍ କିଛି ସମୟ ଲାଗେ ।

ଏହି ଜାତିର ସାପ ଭାରତ, ଆମେରିକା, ଇଣ୍ଡୋଚିନ୍, ଅଷ୍ଟ୍ରେଲିଆ ଏବଂ ଆଫ୍ରିକାରେ ମଧ୍ୟ ଦେଖାଯାଆନ୍ତି ।

---

# ରାକୁନ୍

ଖାଇବା ଜିନିଷ ସଫାସୁତୁରା ହବା ଉଚିତ। ଏ କଥା କ'ଣ ଏକା ମଣିଷ ଜାଣେ? ନାଁ– ଏମିତି କେତେକ ଜୀବ ଅଛନ୍ତି, ସେମାନେ ମଧ ଖାଦ୍ୟକୁ ଧୋଇଧାଇ ତା'ପରେ ଯାଇ ଖାଆନ୍ତି। ଏମିତିକା ଗୋଟେ ସଫାସୁତୁରା ପ୍ରାଣୀ ହେଉଚି 'ରାକୁନ୍'।

ଏହା କୋକିଶିଆଳୀ ପରି ଜୀବଟିଏ। ଦକ୍ଷିଣ କାନାଡାରୁ ପାନାମା ଭିତରେ ଏ ଜୀବଙ୍କ ଘର। ପାଣିକୂଳିଆ ଜାଗା ହୋଇଥିବ, ଗଛବୃକ୍ଷ ଥିବ, ଗହଳିଆ ବୁଦା ଥିବ– ତେବେ ରାକୁନ୍ ରହିବ ସେଇଠି। ରାତିରେ ଶିକାର କରିବ ବେଙ୍ଗ, ମାଛ, କଙ୍କଡା। କାଦୁଅ ପଙ୍କ ପଚପଚ ଜାଗାରୁ ସେମାନେ ଧରନ୍ତି ତାଙ୍କ ଶିକାର। ଏଣେ ବାଦାମ ଫଳ ଓ କଞ୍ଚା ଶସ୍ୟ ମଧ ଖାଇଥାନ୍ତି। କିନ୍ତୁ ଯାହା ଖାଇଲେ ବି ସବୁ ଆଗ ଧୁଆହେବ, ତା'ପରେ ଖିଆହେବ। ପାଣି ଯଦି ଆଖପାଖରେ ନମିଳିଲା ତେବେ ରାକୁନ୍‌ର ଖାଇବା ବନ୍ଦ। ସଫା ପାଣି ନମିଳିଲେ ସେଇ ମଇଳା ଗୋଳିଆ ପାଣି ହେଲେ ବି ଧୂଆହବ। ପାଣିରୁ ଧରିଥିବା ମାଛ, ବେଙ୍ଗକୁ ମାରି ଆଗେ ଧୋଇବ, ତା'ପରେ ଯାଇ ଖାଇବ। କି ଆଶ୍ଚର୍ଯ୍ୟ କଥା– ପାଣିରୁ ଧରାହୋଇ ଆସିଲା ମାଛ, ପୁଣି ପାଣିରେ ଧୁଆହେବା କ'ଣ ଦରକାର? ବୋଧେ ପାଣି ଲାଗିଲେ ଖାଦ୍ୟ ବେଶୀ ସୁଆଦ ଲାଗେ ଜୀବଟିକୁ।

ଦୁଇ ଜାତିର ରାକୁନ୍ ଅଛନ୍ତି। କଙ୍କଡାଖିଆ ରାକୁନ୍‌ମାନେ ଦକ୍ଷିଣ ଆମେରିକା ବାସିନ୍ଦା। ଏମାନେ ଆକାରରେ ଛୋଟ। ଏମାନଙ୍କ ଦେହରେ ରୁମ କମ୍ କିନ୍ତୁ ଗୋଡ଼ଗୁଡ଼ିକ ଅଧିକ ଲମ୍ବା। ଉତ୍ତରରେ ଥିବା ରାକୁନ୍‌ମାନଙ୍କ ଦେହରେ ବହୁତ ରୁମ। ଲାଞ୍ଜକୁ ମିଶାଇ ଲମ୍ବ ୩ ଫୁଟରୁ ବେଶୀ ଓ ଓଜନ ୧୦ କିଲୋରୁ ଅଧିକ।

ପ୍ରକୃତରେ ରାକୁନ୍‌ର ରଙ୍ଗ ଧୂସର। ବେଳେବେଳେ ଈଷତ୍ ହଳଦିଆ ଦିଶନ୍ତି। ଆଖି ଚାରିପଟେ କଜଳ ବୋଳାହେଲା ପରି ଗାଢ କଳା ଦାଗ। ଗୋଜିଆ ମୁହଁ। ଶିକାର ତା'ର ଟାଣୁଆ ପଞ୍ଝା ହାବୁଡେ ଥରେ ପଡିଗଲେ

ସେଥିରୁ ମୁକୁଳିବା ସହଜ ନୁହେଁ। ଧାରୁଆ ମୁନିଆଁ ନଖ ମୁହୂର୍ତ୍ତକ ଭିତରେ ଶିକାରର ପ୍ରାଣ ନିଏ।

ରାକୁନ୍‌ର ଗହମ ରଙ୍ଗର ଝାମ୍ପୁଲା ଲାଞ୍ଜ ଥାଏ। ଫୁଟେ ପାଖାପାଖି ଲମ୍ବ। ଲାଞ୍ଜରେ ମଝିରେ ମଝିରେ ଚାରି-ଛଅଟା ହଳଦିଆ ଗୋଲିଆ ଘେର ଥାଏ। ଥାକୁଲଥୁକୁଲ ରୁମୁରୁମିଆ ରାକୁନ୍ ଦେଖିବାକୁ ଭାରି ସୁନ୍ଦର।



ମାଈ ରାକୁନ୍ ଥରକେ ଏକରୁ ସାତ ପର୍ଯ୍ୟନ୍ତ ଛୁଆ ଜନ୍ମ କରେ। ବୁଦା ଭିତରେ ଗୁହାଭଳି ଘର କରି ଛୁଆଙ୍କୁ ଲୁଚେଇରଖେ। ଯଦି ଭୟର କୌଣସି ସୂଚନା ପାଇଲା ତ ସଙ୍ଗେ ସଙ୍ଗେ ଘର ବଦଳେଇବ। ଗୋଟିକ ପରେ ଗୋଟିଏ ଛୁଆକୁ ନେଇ ଲୁଚି ଲୁଚି ଯାଇ ନୂଆ ଘରେ ରଖିଦେଇ ଆସୁଥିବ।

ରାକୁନ୍‌ର ଏ ନରମ ରୁମ, ସୁନ୍ଦର ଲାଞ୍ଜ ଓ ମାଂସ ପାଇଁ ମଣିଷ ରାକୁନ୍ ଶିକାର କରି ନିର୍ଦ୍ଦୟ ଭାବରେ ସେମାନଙ୍କୁ ମାରିପକାଉଚି। ମଣିଷର ଏଇ ହିଂସ୍ରପଣିଆରୁ କେତେ କେତେ ସୁନ୍ଦର ଜୀବ ଯେ ଏ ପ୍ରକୃତି କୋଳରୁ ଶେଷହୋଇଗଲେଣି କିଏ ତା'ର ହିସାବ ରଖୁଚି ?

—

# ମରୁଭୂମିର ଜାହାଜ ଓଟ

ସମୁଦ୍ରରେ ଚାରିଆଡେ ପାଣି ପରି ମରୁଭୂମିରେ ଯୁଆଡେ ଚାହଁ ଖାଲି ବାଲି.... ବାଲି.... ବାଲି। ଖାଇବାକୁ କିଛି ମିଳିବା ତ ସ୍ୱପ୍ନ, ପିଇବାକୁ ପାଣି ଟୋପାଏ ମଧ ସେଠି ପାଇବା କଷ୍ଟ। କାହିଁ କେତେ କେତେ ଦୂରରେ ମରୁଦ୍ୟାନ ଥାଏ। ଏ ସବୁ ଅସୁବିଧା ଭିତରେ ବି ମଣିଷ ସେଠି ବସବାସକରନ୍ତି। ବହୁ ଦୂର ବାଲିରେ ଯାଇ ମରୁଭୂମି ପାରହୋଇ ବିଭିନ୍ନ ଜାଗାକୁ ଯାଆନ୍ତି। ବାଲିରେ ରାସ୍ତାଘାଟ ତ ନାହିଁ ଯେ ଗାଡି ମଟର ଯିବ– ଏଣୁ ଏକମାତ୍ର ସାହା ମରୁଭୂମିର ଜାହାଜ 'ଓଟ'। ଆଠ ଦଶଦିନ ପର୍ଯ୍ୟନ୍ତ କିଛି ନଖାଇ, ପାଣି ନପିଇ ଏ ଜୀବ ବଞ୍ଚିପାରେ। ଖାଲି ବଞ୍ଚିପାରେ ନୁହେଁ– ବୋଝ ବୋହି ଓ ମଣିଷକୁ ପିଠିରେ ବସେଇ ମରୁଭୂମିର ତାତିଲା ବାଲିରେ ଅନବରତ ଚାଲିପାରେ। ତା ଆଖି, କାନ, ନାକ ଏମିତି ତିଆରି ଯେ ମରୁଭୂମିର ବାଲିଝଡକୁ ବି ସେ ବେଶ୍ ସହିପାରେ।

ମରୁଭୂମିରେ ଲୁ ବା ବାଲିଝଡ ହେବା ଖବର ଓଟକୁ ଆଗରୁ ଜଣାପଡିଯାଏ। ତା'ର ସୂଚନା ପାଇଲାମାତ୍ରେ ସେ ତା'ର ମୁହଁକୁ ପେଟତଳେ ଗୁଞ୍ଜିଦେଇ ଝଡକୁ ପିଠିକରି ଶୋଇପଡେ। ତା'ର ଯାତ୍ରୀମାନେ ମଧ ତା ପେଟ ପାଖରେ ଆଶ୍ରୟ ନେଇ ଝଡରୁ ରକ୍ଷାପାଆନ୍ତି।

ଅନେକଙ୍କର ଧାରଣା ଓଟର ପ୍ରତିଦିନ ଖାଦ୍ୟ ଖାଇବା ଦରକାର ନାହିଁ। କିନ୍ତୁ ଏ କେମିତି କଥା ? ଜୀବଟାଏ– ତା'ର ପୁଣି ଖାଦ୍ୟ ଦରକାର ହେବନାହିଁ କେମିତି ? ଅନ୍ୟ ଜୀବ ଭଳି ତା'ର ମଧ ଖାଦ୍ୟ ଓ ପାଣି ପ୍ରତିଦିନ ଦରକାର। କିନ୍ତୁ ତା'ଦେହ ଭିତର ଏମିତି ତିଆରି ଯେ କେତେଦିନ ଲାଗି ଖାଦ୍ୟ ଓ ପାଣି ସେ ତା ଦେହ ଭିତରେ ସଞ୍ଚୟ କରି ରଖିପାରେ।

ଓଟର ପିଠିରେ ଥାଏ ମସ୍ତବଡ କୁଜ। ଏଇ କୁଜଟି ପ୍ରକୃତରେ ତା'ର ଖାଦ୍ୟଭଣ୍ଡାର। ଏ କୁଜର ଓଜନ ୪୫ କେ.ଜି. ପର୍ଯ୍ୟନ୍ତ ହୋଇଥାଏ।

ତା'ର ଖାଦ୍ୟ ଚର୍ବିରେ ପରିଣତ ହୋଇ କୁଜରେ ସଞ୍ଚିତ ହୋଇ ରହିଥାଏ । ଖାଦ୍ୟ ନମିଳିବା ସମୟରେ ଏ ଚର୍ବି ଓଟକୁ ସାହାଯ୍ୟ କରେ । ଚର୍ବି ଧୀରେ ଧୀରେ ଖର୍ଚ୍ଚହୋଇ ଓଟକୁ ବଳ ଯୋଗାଏ ।

ତା ପେଟ ଭିତରେ ଥାଏ ବଡ ବୋତଲ ପରି ଦୁଇଟି ମୁଣି । ସେଥିରେ ପାଣି ରହିପାରେ । ଯେତେବେଳେ ଓଟକୁ ଖାଦ୍ୟ ଓ ପାଣି ନମିଳେ ସେ କୁଜରୁ ଚର୍ବିରୂପୀ ଖାଦ୍ୟ ଖାଇ ଓ ପେଟ ଭିତର ମୁଣିରୁ ପାଣି ପିଇ ଆଠ ଦଶ ଦିନ କାଳ ଅନାହାରରେ ରହିଯାଇପାରେ ।



ଦୂରବାଟକୁ ଯିବା ପୂର୍ବରୁ ଓଟ ପ୍ରଚୁର ପରିମାଣରେ ଖାଦ୍ୟ ଖାଏ ଏବଂ ବହୁତ ପାଣି ପିଇଥାଏ – ଯେମିତିକି ତାହା ସଞ୍ଚୟ ହୋଇ ରହିପାରିବ । ଖାଇବାକୁ ନପାଇ ବହୁ ପଥ ଅତିକ୍ରମ କଲା ପରେ ଓଟର କୁଜ ଶିଥିଳ ହୋଇଯାଏ, କାରଣ ତା ଚର୍ବି ସରିଯାଇଥାଏ । ନିର୍ଦ୍ଦିଷ୍ଟ ଜାଗାରେ ପହଞ୍ଚିଗଲା ପରେ ଓଟ ଅନେକ ବେଳ ଚୁପ୍‌ଚାପ୍ ଶୋଇରହେ । ଉଠିଲା ପରେ ପ୍ରଚୁର ଖାଦ୍ୟ ଖାଇ ଓ ପାଣି ପିଇ ସେ ସୁସ୍ଥ ହୁଏ ।

ଜଣାଯାଇଛି ଯେ ଇଜିପ୍ଟର ଲୋକମାନେ ୩ ହଜାର ବର୍ଷ ତଳୁ ଓଟକୁ ପୋଷାମନେଇ କାମରେ ଲଗେଇଲେଣି । ବର୍ତ୍ତମାନ ମଧ୍ୟ ମରୁଭୂମିରେ ଚଳପ୍ରଚଳ ହେବାପାଇଁ ମଣିଷ ଆଗଭଳି ଓଟ ଉପରେ ନିର୍ଭର କରୁଛି ।

# ଅଦ୍ଭୁତ ପକ୍ଷୀ ପେଙ୍ଗୁଇନ୍

ପୃଥିବୀର ଦକ୍ଷିଣ ଗୋଲାର୍ଦ୍ଧର ମେରୁ ଅଞ୍ଚଳ ଆଣ୍ଟାର୍କଟିକା ମହାଦେଶରେ ଏକ ପ୍ରକାର ପକ୍ଷୀ ଦେଖାଯାନ୍ତି, ଯାହାଙ୍କ ନାମ ପେଙ୍ଗୁଇନ୍। ଏମାନେ ଅତିଶୟ ଶୀତ ସହ୍ୟ କରିପାରନ୍ତି। ତେଣୁ ବରଫାବୃତ ସମୁଦ୍ରଜଳରେ ଏମାନେ ବେଶ୍ ଖୁସିରେ ବାସକରନ୍ତି। ଉଭୟ ସ୍ଥଳ ଓ ଜଳରେ ଏମାନେ ଚଳପ୍ରଚଳ ହୋଇପାରନ୍ତି। ଭୂମିରେ ଥିବାବେଳେ ଏମାନେ ଦୁଇଗୋଡରେ ସିଧା ଠିଆହୁଅନ୍ତି ଓ ଚାଲିପାରନ୍ତି। ମଣିଷର ପାଦ ପରି ଏମାନଙ୍କର ପାଦ ମାଟି ଉପରେ ଚଟକା ଭାବେ ଥାପିହୋଇ ରହିପାରେ। କାନ୍ଧର ଦୁଇକଡରୁ ଛୋଟ ଛୋଟ ଡେଣା ଦୁଇଟି ମଣିଷର ଦୁଇ ହାତ ଭଳି ଝୁଲି ରହିଥାଏ। ଏମାନେ ଝୁଲି ଝୁଲି ମାଟି ଉପରେ ଚାଲିଲା ବେଳେ ଛୋଟ ପିଲାମାନେ ଚାଲିଲା ଭଳି ଦିଶନ୍ତି।

ପେଙ୍ଗୁଇନ୍‌ମାନେ ବରଫାବୃତ ଜଳରେ ବାସକରୁଥିଲେ ମଧ୍ୟ ଦକ୍ଷିଣ ଗୋଲାର୍ଦ୍ଧ ଛଡା ଉତ୍ତର ଗୋଲାର୍ଦ୍ଧରେ ଆଦୌ ଦେଖାଯାନ୍ତି ନାହିଁ। ଆଣ୍ଟାର୍କଟିକା ବ୍ୟତୀତ ଏମାନେ ଅଷ୍ଟ୍ରେଲିଆ, ନିଉଜିଲ୍ୟାଣ୍ଡ, ଦକ୍ଷିଣ ଆମେରିକା ଓ ଆଫ୍ରିକାର ଦକ୍ଷିଣାଞ୍ଚଳର ଶୀତଳ ଅଞ୍ଚଳରେ ମଧ୍ୟ ବାସକରନ୍ତି।

ପେଙ୍ଗୁଇନ୍‌ମାନଙ୍କୁ ସତରଟି ଜାତିରେ ବିଭକ୍ତ କରାଯାଏ। ଏମାନଙ୍କ ଭିତରୁ ଆଦିଲି ଜାତିର ପେଙ୍ଗୁଇନ୍‌ଙ୍କର ପିଠି ପାଖ କଳା ଓ ପେଟ ପାଖ ଧଳା। ପେଙ୍ଗୁଇନ୍‌ମାନଙ୍କର ମୁଣ୍ଡର ଗଠନ ଓ ଶରୀରର ଆକାର ଅନୁସାରେ ସେମାନଙ୍କୁ ବିଭିନ୍ନ ଜାତିରେ ବିଭକ୍ତ କରାଯାଏ। ସବୁଠାରୁ ସାନ ପେଙ୍ଗୁଇନ୍‌ଙ୍କୁ 'ଅପ୍‌ସରୀ ପେଙ୍ଗୁଇନ୍' କୁହାଯାଏ। ଏମାନଙ୍କର ଉଚ୍ଚତା ପ୍ରାୟ ୪୦ ସେ.ମି.। ସବୁଠୁ ବଡ ପେଙ୍ଗୁଇନ୍‌ଙ୍କୁ 'ସମ୍ରାଟ ପେଙ୍ଗୁଇନ୍' କୁହାଯାଏ। ଏମାନଙ୍କର ଉଚ୍ଚତା ପ୍ରାୟ ୧୨୦ ସେ.ମି.। ସ୍ତ୍ରୀ ପୁରୁଷ ଉଭୟଙ୍କର ଉଚ୍ଚତା ପ୍ରାୟ ସମାନ।

ପେଙ୍ଗୁଇନ୍‌ର ଛୋଟ ଡେଣା ଉଡିବାରେ ତାକୁ ସାହାଯ୍ୟ କରେନାହିଁ, କିନ୍ତୁ ପାଣିରେ ପହଁରିଲାବେଳେ ଆହୁଲା ଭଳି କାମ ଦିଏ। ସେମାନେ

ଖୁବ୍ ଭଲ ପହଁରାଳୀ । ପେଙ୍ଗୁଇନ୍‌ମାନଙ୍କ ଚାଲି ଦେଖିଲେ ମନେହୁଏ ଉଡିବା କ'ଣ ସେମାନେ ତାହା କେବେ ଜାଣିନଥିଲେ । କିନ୍ତୁ ପକ୍ଷୀଗବେଷକଙ୍କ ମତରେ ଅତି ପୁରାକାଳରେ ଏମାନେ ନିଶ୍ଚୟ ଉଡିପାରୁଥିବେ । ଉଡିବା ପରିବର୍ତ୍ତେ ପହଁରିବା ପାଇଁ ଡେଣାର ବ୍ୟବହାର ଯୋଗୁଁ କାଳକ୍ରମେ ତାହା କ୍ଷୁଦ୍ର ହୋଇଯାଇଛି । ପେଙ୍ଗୁଇନ୍‌ର କ୍ଷୁଦ୍ର ଡେଣାର ଅନ୍ୟ ଏକ କାରଣ ହେଲା – ସୁଦୂର ବରଫାଚ୍ଛାଦିତ ଅଞ୍ଚଳରେ ଏମାନଙ୍କର ଶତ୍ରୁ ପ୍ରାୟ କେହି ନଥାନ୍ତି । ତେଣୁ ଶତ୍ରୁଠାରୁ ରକ୍ଷାପାଇବା ପାଇଁ ଉଡିବାର ଆବଶ୍ୟକତା ଏମାନଙ୍କର ନାହିଁ । ଖାଦ୍ୟ ଆହରଣ ପାଇଁ ସମୁଦ୍ର ପାଣିରେ ପହଁରିବା ଓ ବୁଡ଼ା ମାରିବା ଏମାନଙ୍କର ବେଶୀ ଦରକାର । ତେଣୁ ଡେଣାର ବ୍ୟବହାର ଅଭାବରୁ ସମୟ କ୍ରମେ ତାହା ଛୋଟ ହୋଇଯାଇଛି ।



ପେଙ୍ଗୁଇନ୍‌ମାନେ ଦଳ ଦଳ ହୋଇ ବାସକରନ୍ତି । ଏମାନଙ୍କର ପ୍ରଧାନ ଖାଦ୍ୟ ମାଛ, ଚୁଙ୍ଗୁଡି, ଗେଣ୍ଡା ଓ ସେହିପରି ଅନ୍ୟାନ୍ୟ ସାମୁଦ୍ରିକ ପ୍ରାଣୀ । ସମୁଦ୍ରର ଥଣ୍ଡା ପାଣିରେ ସେମାନେ ପହଁରି ଖାଦ୍ୟ ସଂଗ୍ରହ କରନ୍ତି ।

ବରଫ ପାଣିରେ ପେଙ୍ଗୁଇନ୍ ବଞ୍ଚେ କିପରି ? ଏଥିପାଇଁ ଏହାର ଶରୀରରେ କେତେକ ବିଶେଷତ୍ୱ ଲକ୍ଷ୍ୟକରାଯାଏ । ତା'ର ସାରା ଦେହ ଏକପ୍ରକାର ପରଦ୍ୱାରା ଆଚ୍ଛାଦିତ । ଏଥିରେ ପାଣି ଲାଗେନାହିଁ । ତା'ଛଡା

ତା'ର ପରଗୁଡିକ ସୂକ୍ଷ୍ମ ନଳୀଯୁକ୍ତ ହୋଇଥିବାରୁ ସେଥିରେ ପବନ ଭରିରହିଥାଏ। ତେଣୁ ଦେହରୁ ଉତ୍ତାପ ସହଜରେ ବାହାରି ଯାଏ ନାହିଁ। ପୁଣି ଏହାର ଚମ ତଳେ ଖୁବ୍ ମୋଟା ଚର୍ବିର ସ୍ତର ରହିଥାଏ। ଏହାଦ୍ୱାରା ଶରୀରର ତାପ ସୁରକ୍ଷିତ ରହେ।

ମାଈ ପେଙ୍ଗୁଇନ୍ ଥରକେ ଗୋଟିଏ ବା ଦୁଇଟି ଅଣ୍ଡା ଦିଏ। ଉଭୟ ବାପ ମାଆ ଏ ଅଣ୍ଡାକୁ ଉଷୁମାନ୍ତି। ଏହି ସମୟ ଭିତରେ ସେମାନେ ଆଦୌ ଖାଦ୍ୟ ଖାଆନ୍ତିନାହିଁ। ଛୁଆ ଖାଦ୍ୟ ଖାଇବାପାଇଁ ଉପଯୁକ୍ତ ହୋଇଗଲେ ଏମାନେ ପ୍ରଥମେ ଖାଦ୍ୟକୁ ନିଜେ ଖାଇ ତାକୁ ପୁଣି ଥଣ୍ଟରୁ ବାହାରକରି ଶାବକକୁ ଖୁଆନ୍ତି।

## ତିନିଆଖିଆ ଜୀବ ଟୁଆଟାରା

ନିଉଜିଲ୍ୟାଣ୍ଡର ଟୁଆଟାରା ଏଣ୍ଟୁଅ ଭଳି ଦିଶୁଥିବା ଏକ ପ୍ରାଣୀ– କିନ୍ତୁ ଏମାନେ ଏଣ୍ଟୁଅ ନୁହନ୍ତି। ଏମାନଙ୍କର ତିନୋଟି ଆଖି। ଟୁଆଟାରା କେବଳ ନିଉଜିଲ୍ୟାଣ୍ଡରେ ହିଁ ଦେଖାଯାଏ। ପ୍ରାଣୀ ବୈଜ୍ଞାନିକଙ୍କ ମତରେ ପ୍ରାୟ ୨୦ କୋଟି ବର୍ଷ ତଳେ ଟୁଆଟାରାମାନେ ସୃଷ୍ଟି ହୋଇଥିଲେ।କିନ୍ତୁ ସେତେବେଳେ ଏମାନଙ୍କ ଆକୃତି ଭିନ୍ନ ପ୍ରକାରର ଥିଲା। ଟୁଆଟାରାର ତୃତୀୟ ଆଖିଟି କପାଳ ମଝିରେ ଏକ ଗାତ ଭିତରେ ଥାଏ। ଏହି ଆଖି ଉପରେ ଗୋଟିଏ ଆଖିପତା ମଧ୍ୟ ଥାଏ। ଏ ଆଖିଟି ଟୁଆଟାରାର କିଭଳି କାମରେ ଲାଗେ ତାହା ଏପର୍ଯ୍ୟନ୍ତ ସ୍ଥିର କରାଯାଇପାରିନାହିଁ।



ବଡ ଟୁଆଟାରାର ଦେହର ଓଜନ ହାରାହାରି ଏକ କେ.ଜି.। ପୁରୁଷ ଟୁଆଟାରା ତୁଳନାରେ ସ୍ତ୍ରୀ ଟୁଆଟାରାର ଓଜନ ବହୁତ କମ୍ – ପ୍ରାୟ ଅଧା।

ଏମାନଙ୍କର ଖାଦ୍ୟ ହେଲା କୀଟ, ପତଙ୍ଗ, ବେଙ୍ଗ, ମୂଷା, ଚଢ଼େଇ ଅଣ୍ଡା ଇତ୍ୟାଦି। ଏମାନେ ମାଟିରେ ଗାତ ଖୋଳି ରହନ୍ତି। ତୁଆଟାରା ସତୁରୀରୁ ଶହେ ବର୍ଷ ପର୍ଯ୍ୟନ୍ତ ବଞ୍ଚେ। ମାଈ ତୁଆଟାରା ଥରକେ ଆଠରୁ ପନ୍ଦର ପର୍ଯ୍ୟନ୍ତ ଅଣ୍ଡାଦିଏ, କିନ୍ତୁ ଏ ଅଣ୍ଡାଗୁଡ଼ିକ ସେ ନିଜ ଗାତଠାରୁ ଅଳ୍ପ ଦୂରରେ ଆଉ ଏକ ଗାତ ଖୋଳି ରଖେ। ଅଣ୍ଡା ଫୁଟିବାକୁ ପ୍ରାୟ ବର୍ଷେ ଲାଗେ। ଏମାନଙ୍କର ଅଣ୍ଡା ଦେବା ସମୟ ବସନ୍ତ ଋତୁ। ଏ ଅଦ୍ଭୁତ ଅତି ପ୍ରାଚୀନ କାଳର ପ୍ରାଣୀଟି ବର୍ତ୍ତମାନ ପୃଥିବୀ ପୃଷ୍ଠରୁ ଲୋପପାଇଯିବା ଆଶଙ୍କା କରାଯାଏ। ନିଉଜିଲ୍ୟାଣ୍ଡ ସରକାର ଏ ଜୀବର ସଂରକ୍ଷଣ ପାଇଁ ବହୁ ଚେଷ୍ଟା କରୁଛନ୍ତି।

## ଚଢ଼େଇଖିଆ ବୁଢ଼ିଆଣୀ

ସାରା ପୃଥିବୀରେ ଏପର୍ଯ୍ୟନ୍ତ ୩୦ ହଜାର ପ୍ରକାର ବୁଢ଼ିଆଣୀଙ୍କୁ ଚିହ୍ନଟ କରାଯାଇଛି। ଏମାନଙ୍କ ଛଡ଼ା ଆହୁରି ୨୦ ହଜାର ପ୍ରକାରର ବୁଢ଼ିଆଣୀ ଅଛନ୍ତି। କେତେକ ଜାତିର ବୁଢ଼ିଆଣୀ ଅଛନ୍ତି ଯେଉଁମାନେ କାମୁଡ଼ିଲେ ମଣିଷ ମରିଯାଇପାରେ।

ବୁଢ଼ିଆଣୀ ସାଧାରଣଭାବେ ତା ଜାଲରେ ଧରାପଡ଼ିଥିବା ମଶା, ମାଛି, କୀଟ ପତଙ୍ଗଙ୍କୁ ଧରି ଖାଏ। ବୁଢ଼ିଆଣୀ ଚଢ଼େଇ ଖାଏ – ଏକଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗୁଛି। କିନ୍ତୁ ପ୍ରକୃତରେ ବିଷୁବମଣ୍ଡଳୀୟ ଅଞ୍ଚଳରେ ଏପରି ଚଢ଼େଇଖିଆ ବୁଢ଼ିଆଣୀ ଦେଖାଯାନ୍ତି। ଆକାରରେ ଏମାନେ ବହୁତ ବଡ଼ ହୁଅନ୍ତି।

ଏହି ବୁଢ଼ିଆଣୀର ଦେହର ଲମ୍ବ ୯ ସେ.ମି. ଏବଂ ଗୋଡ଼ ଲମ୍ବେଇଦେଲେ ୨୫ ସେ.ମି. ପର୍ଯ୍ୟନ୍ତ ବଢ଼ିଯାଇପାରେ। କେବଳ ଚଢ଼େଇ ନୁହନ୍ତି, ଆହୁରି କେତେକ ଛୋଟ ଜୀବ ମଧ୍ୟ ସୁବିଧା ମିଳିଲେ ଏମାନେ ଖାଇଥାନ୍ତି। ମଣିଷ ପାଇଁ ଏମାନେ ଏତେ ବିପଦଜନକ ନୁହନ୍ତି, କିନ୍ତୁ କାମୁଡ଼ିଦେଲେ ଭୟଙ୍କର ଯନ୍ତ୍ରଣା ହୁଏ।

ଚଢେଇଖିଆ ବୁଢ଼ିଆଣୀ ଗଛ ଡାଳରେ ଜାଲ ବାନ୍ଧିଥାଏ। ଚଢେଇଟିଏ ଜାଲରେ ପଡିଲାମାତ୍ରକେ ତାକୁ କାବୁ କରିବାକୁ ବୁଢ଼ିଆଣୀ ଶିକାର ଉପରକୁ ଏକ ପ୍ରକାର ବିଷାକ୍ତ ତରଳ ପଦାର୍ଥ ପିଚ୍‌କିନା ଛାଡିଦିଏ। ଏହା ଫଳରେ ଚଢେଇଟି ଛାଟିପିଟି ହୋଇ ଜାଲ ଛିଣ୍ଡାଇ ବାହାରି ଯିବା ପାଇଁ ଚେଷ୍ଟା କରିବା ପୂର୍ବରୁ ମରିଯାଏ ଓ ବୁଢ଼ିଆଣୀ ତାକୁ ଖାଏ।

ଏମାନଙ୍କ ଭିତରୁ ଆଉ କେତେକ ଅଛନ୍ତି ଯେଉଁମାନେ ମାଟିତଳେ ୬୦ ସେ.ମି. ପର୍ଯ୍ୟନ୍ତ ଗାତ କରି ତା ଉପରେ ଜାଲ ବିଛାଇଦେଇଥାନ୍ତି। କୌଣସି ଶିକାର ଯଦି ଏଥିରେ ପଡିଲା ତେବେ ତା'ର ଆଉ ରକ୍ଷା ନାହିଁ।

## ଚମ୍ପେଇନେଉଳ ସ୍କିଙ୍କ୍

ବାଡିବଗିଚାରେ ଚମ୍ପେଇନେଉଳମାନେ ବୁଲାବୁଲି କରିବାର ଦେଖାଯାଏ। ଅନେକେ ଏହାକୁ ବିଷଧର ପ୍ରାଣୀ ବୋଲି ଭାବନ୍ତି। କିନ୍ତୁ ଏମାନେ ଏଣ୍ଡୁଅ ପରି ଏକ ନିରୀହ ଜନ୍ତୁ। ପୃଥିବୀରେ ହାରାହାରି ୬ ଶହ ପ୍ରକାର



ଚମ୍ପେଇନେଉଳ ଅଛନ୍ତି। କିନ୍ତୁ ଏମାନେ ମୁଖ୍ୟତଃ ଆଫ୍ରିକା, ପୂର୍ବଭାରତୀୟ ଦ୍ୱୀପପୁଞ୍ଜ, ଅଷ୍ଟ୍ରେଲିଆ ପ୍ରଭୃତି ଗ୍ରୀଷ୍ମମଣ୍ଡଳୀୟ ଦେଶରେ ଦେଖାଯା'ନ୍ତି।

ଚମେଇନେଉଳର ଚମ ଖୁବ୍ ପତଳା ଓ ଚିକ୍କଣ। ଏହାର ଗୋଡ ଚାରୋଟି ମଧ ଛୋଟ ଛୋଟ। ମୁଣ୍ଡ ଗୋଜିଆ। ଅନେକ ସମୟରେ ଏମାନେ ଗାତ ଭିତରୁ ମୁହଁ କାଢ଼ିଥିବାର ଦେଖିଲେ ସାପର ଭ୍ରମ ହୁଏ। ଏମାନେ ମାଟି ଉପରେ, କାଛ ଉପରେ ଦେଣ୍ଣ୍ ଦ୍ରୁତଗତିରେ ଚାଲିପାରନ୍ତି।

ସାନ ସାନ ଫାଟ ଭିତରେ ଏମାନେ ଚାପିଚୁପି ହୋଇ ପଶିଯାଇପାରନ୍ତି। ଏମାନଙ୍କ ଗୋଡର ଆକାର ଦେହ ତୁଳନାରେ ଛୋଟ ହୋଇଥିବା ହେତୁ ଗାତରେ ପଶିବାକୁ ଏମାନଙ୍କୁ ସୁବିଧା ହୁଏ। ଚମେଇନେଉଳର ବିଶେଷ ଏକ ଗୁଣ ହେଲା ସେ ପ୍ରାୟ ଆଖି ବନ୍ଦ କରି ଦେଖିପାରେ। ପ୍ରକୃତରେ ସେମାନଙ୍କ ଆଖି ପୂରାପୂରି ବନ୍ଦ ହୋଇଯାଇନଥାଏ। ତା' ଆଖି ଉପରେ ଏକ ସ୍ୱଚ୍ଛ ପରଦା ଆଖିର ପତା ଭଳି କାମ କରେ। ସେ ଏହି ପରଦାକୁ ଆଖି ଉପରେ ଟାଣିଦେବା ଫଳରେ ତା ଆଖିରେ ଧୂଳିମଳି ପଶେନାହିଁ, ଅଥଚ ସେ ବେଶ୍ ଭଲଭାବରେ ଦେଖିପାରେ। ଏମାନଙ୍କ ଭିତରୁ କେତେକ କେବଳ କୀଟ ପତଙ୍ଗ ଖାଇ ବଞ୍ଚନ୍ତି। ଆଉ କେତେକ ସଂପୂର୍ଣ୍ଣ ତୃଣଭୋଜୀ।

## ଗଣ୍ଡା

ବିରାଟ ଆକାର ଓ ଓଜନିଆ ଦେହ ଧାରଣ କରିଥିବା ଜନ୍ତୁଙ୍କ ଭିତରେ ହାତୀ ତଳକୁ ଗଣ୍ଡାର ସ୍ଥାନ। ଇଂରାଜୀରେ ଏହାର ନାମ 'ରାଇନୋସେରସ୍'। ଏହା ଏକ ଗ୍ରୀକ୍ ନାମ। ଗ୍ରୀକ୍ ଭାଷାରେ 'ରାଇନୋ' ଅର୍ଥ 'ନାକ' ଓ . 'ସେରସ୍' ଅର୍ଥ 'ଶିଂଘ'। ଏ ଜୀବର ଗୋଟିଏ ବା ଦୁଇଟି ବଙ୍କା ଶିଂଘ ତା ଲମ୍ବା ନାକ ଉପରୁ ଉଠିଥାଏ। ସେଥିପାଇଁ ଏପରି ନାମକରଣ ହୋଇଛି।

ଛୋଟ ଛୋଟ ଚାରୋଟି ମଜଭୁତ ଗୋଡ ଗଣ୍ଡାର ଏ ଅତି ଓଜନିଆ ଶରୀରର ଭାର ବହନ କରନ୍ତି। ପ୍ରତି ଗୋଡରେ ତିନିଟି ଆଙ୍ଗୁଠି ଓ ପ୍ରତି ଆଙ୍ଗୁଠି ପାଇଁ ଭିନ୍ନ ଭିନ୍ନ ଖୁରା ଥାଏ। ଆଗ ଗୋଡ ଦୁଇଟିରେ ପ୍ରକୃତରେ ଚାରୋଟି ଲେଖାଏଁ ଆଙ୍ଗୁଠି ଥାଏ; କିନ୍ତୁ ସେ ଅଧିକା ଆଙ୍ଗୁଠିଟି କିଛି କାମରେ ଲାଗେ ନାହିଁ।

ପୃଥିବୀରେ ମୋଟେ ପାଞ୍ଚ ଜାତିର ଗଣ୍ଡା ଅଛନ୍ତି। ତହିଁରୁ ଆଫ୍ରିକାରେ ଦୁଇ ପ୍ରକାର ଓ ଏସିଆରେ ତିନି ପ୍ରକାର ଅଛନ୍ତି।

ଆଫ୍ରିକା ଗଣ୍ଡାଙ୍କର ଦୁଇଟି ଶିଂଘ ଥାଏ। ଏସିଆ ଗଣ୍ଡାଙ୍କ ଭିତରୁ ସୁମାତ୍ରାରେ ଥିବା ଗଣ୍ଡାଙ୍କର ମଧ୍ୟ ଦୁଇଟି ଲେଖାଏଁ ଶିଂଘ। କିନ୍ତୁ ଭାରତ ଓ ଜାଭାର ଗଣ୍ଡାମାନେ ଏକଶିଂଘା। ମଣିଷର ନଖ ଓ ବାଳ ପରି ଗଣ୍ଡାର ଶିଂଘ ତା'ର ଜୀବନ ସାରା ବଢୁଥାଏ।



ଆଫ୍ରିକାର ଧଳା ଗଣ୍ଡା ଆକାରରେ ସବୁଠାରୁ ବଡ। କାନ୍ଧ ପର୍ଯ୍ୟନ୍ତ ତା'ର ଉଚ୍ଚତା ୧ ମିଟର ୮୦ସେ. ମିଟର ଓ ଓଜନ ତିନି ଟନ୍। ଆଫ୍ରିକାର ଧଳା ଓ କଳା ଗଣ୍ଡାଙ୍କ ଭିତରେ ପ୍ରଭେଦ କେବଳ ସେମାନଙ୍କ ଓଠର ଆକାରରେ। ଧଳା ଗଣ୍ଡାର ପାଟି ବଡ, ଚଉଡା ଓ ଚାରିକଣିଆ। ଘାସର ଅଗ କାଟିବା ପାଇଁ ଏଥିରେ ଭାରି ସୁବିଧା। କିନ୍ତୁ କଳା ଗଣ୍ଡାର ଓଠ ଗୋଜିଆ। ଘାସ ଚରିବା ପାଇଁ ଓ ଲଟା ବୁଦାରୁ ଡାଳ ପତ୍ର ଛିଣ୍ଡାଇ ଖାଇବା ପାଇଁ ଏଥିରେ ସୁବିଧା ହୁଏ। ଏମାନଙ୍କ ଛଡା ସୁମାତ୍ରାର ଦୁଇଶିଂଘିଆ ଗଣ୍ଡା ଆକାରରେ ଅପେକ୍ଷାକୃତ ସାନ। ସେମାନେ ୧ ମିଟରେ ୩୫ ସେ. ମିଟର ଉଚ୍ଚ ଓ ଏମାନଙ୍କ ଓଜନ ମଧ୍ୟ ଏକ ଟନ୍‌ରୁ କମ୍।

ଏତେ ବଡ ପ୍ରାଣୀ ଗଣ୍ଡା ସେ କେବଳ ଘାସ, ଲଟା, ଡାଳ ପତ୍ର ଖାଇ ବଞ୍ଚେ। ଖାଦ୍ୟ ପାଇଁ ପ୍ରାଣୀ ଶିକାର କରେନାହିଁ। ମାତ୍ର

ତା'ଉପରେ ବିପଦ ପଡିଲେ ସେ ଅତି ଭୟଙ୍କର ହୋଇଉଠେ। ଗଣ୍ଡା ଘଣ୍ଟାକୁ ତିରିଶ ମାଇଲ୍ ବେଗରେ ଦୌଡିଆସି ତା ଟାଣୁଆ ମୁନିଆଁ ଶିଂଘରେ ଆକ୍ରମଣ କରି ଶତ୍ରୁକୁ କ୍ଷତବିକ୍ଷତ କରିପକାଏ।

ଗଣ୍ଡାର ଚମଡା ଖୁବ୍ ମୋଟା। ତା' ଦେହକୁ ଚାହିଁଲେ ଲାଗେ ସତେକି ସେ ଏକ ଓଜନିଆ ସାଞ୍ଜୁ ସାରା ଦେହରେ ପିନ୍ଧିଚି। ଠିକ୍ ନାକଦଣ୍ଡା ଉପରେ ତା'ର ଶିଂଘ— ମୁଣ୍ଡ ସହିତ ତା'ର କୌଣସି ସମ୍ବନ୍ଧ ନାହିଁ। କେବେ କେମିତି ଲଢ଼େଇରେ ଏ ଶିଂଘ ଭାଙ୍ଗିଗଲେ ପୁଣି ଶୀଘ୍ର ବଢ଼ିଯାଏ।

ମାଈଗଣ୍ଡା ଥରକେ ଗୋଟିଏ ଛୁଆ ଜନ୍ମକରେ। ଗର୍ଭଧାରଣର ଅଠର ମାସ ପରେ ଛୁଆ ଜନ୍ମହୁଏ ଓ ଅନେକ ଦିନ ପର୍ଯ୍ୟନ୍ତ ଛୁଆ ମାଆ ପଛେ ପଛେ ଗୋଡାଉଥାଏ।

ଚିଡିଆଖାନାରେ ରହୁଥିବା ଗଣ୍ଡା ପ୍ରାୟ ପଞ୍ଚାଶବର୍ଷ ବଞ୍ଚେ। ଖରାଦିନର ଗରମ ସହିନପାରି ଗଣ୍ଡାମାନେ ପଙ୍କ ପାଣିରେ ବୁଡିଥାନ୍ତି। ତେଣୁ ସେଠାରୁ ବାହାରିଲା ବେଳକୁ ତା'ର ଧୂସର ବର୍ଣ୍ଣର ଚମଡା କାଦୁଅ ବଲବଲ ହୋଇଥାଏ। କାଦୁଅ ଶୁଖି ଗଣ୍ଡା ଦେହରେ ଲାଗିରହି ତାକୁ ଜଙ୍ଗଲି ମଶା ଡାଆଁଶ କାମୁଡାରୁ ରକ୍ଷାକରେ।

ଗଣ୍ଡାମାନଙ୍କ ସଂଖ୍ୟା ଏବେ ବହୁତ କମିଗଲାଣି। ତା'ର ମୂଲ୍ୟବାନ୍ ଶିଂଘ ପାଇଁ ମଣିଷ ଗଣ୍ଡା ଶିକାର କରେ। ବର୍ତ୍ତମାନ ଗଣ୍ଡାମାନଙ୍କ ସୁରକ୍ଷା ପାଇଁ ସରକାର କଠୋର ନିୟମ କରିଛନ୍ତି।

—

# ଜଗତରେ ଜୀବ ସୃଷ୍ଟିର ରହସ୍ୟ

ଭୂପୃଷ୍ଠରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠି ଜୀବନର ସ୍ଥିତି ନାହିଁ। ଜଳ, ସ୍ଥଳ, ବାୟୁ ସବୁଠାରେ ଛୋଟବଡ଼ଠାରୁ ଆରମ୍ଭ କରି ଅଦୃଶ୍ୟ ଜୀବାଣୁ ଭଳି ଜୀବନ୍ତ ପଦାର୍ଥ ପୂରିରହିଚ୍ଛନ୍ତି। ହିମାଳୟର ବରଫ ତଳେ, ଏପରିକି ସାହାରା ମରୁଭୂମିର ଧୂ ଧୂ ତାତିଲା ବାଲି ତଳେ ମଧ୍ୟ ଜୀବନର ଉପସ୍ଥିତି ଦେଖାଯାଇଛି। ଗଛଲତା, ପଶୁପକ୍ଷୀ, କୀଟପତଙ୍ଗ ବ୍ୟତୀତ ଜୀବାଣୁ, ଭୂତାଣୁ ପର୍ଯ୍ୟନ୍ତ ଜୀବଜଗତ ପରିବ୍ୟାପ୍ତ।

ଏ ଜୀବଜଗତର ଉତ୍ପତ୍ତି କେବେଠୁ ? – ପୃଥିବୀପୃଷ୍ଠରେ ଜୀବଜଗତର ଉତ୍ପତ୍ତି ବିଷୟରେ ଜାଣିବା ପାଇଁ ବୈଜ୍ଞାନିକମାନେ ନାନାପ୍ରକାର ପରୀକ୍ଷା ନିରୀକ୍ଷା ଚଳାଇଆସିଚ୍ଛନ୍ତି। ସେଥିମଧ୍ୟରୁ ଜୀବାଶ୍ମ ବା ଫସିଲ୍ ସଂପର୍କରେ ପରୀକ୍ଷା ଅନ୍ୟ ଏକ ଉପାୟ।

'ଜୀବାଶ୍ମ' କଅଣ ? – ଭୂତଳର ଶିଳାସ୍ତର ଭିତରେ ପ୍ରାଚୀନକାଳର ଛୋଟବଡ଼ ପ୍ରାଣୀ ବା ଉଦ୍ଭିଦର ଯେଉଁ ଅବଶେଷ ପ୍ରାକୃତିକ ପ୍ରକ୍ରିୟାରେ ସଂରକ୍ଷିତ ହୋଇଛି ତାକୁଇ 'ଜୀବାଶ୍ମ' କୁହାଯାଏ। ଜୀବାଶ୍ମ ପରୀକ୍ଷାରୁ ଜୀବର ଅବଶେଷର ସମୟକାଳ ନିର୍ଦ୍ଧାରଣ କରି ହୁଏ। ଏହି ପ୍ରଣାଳୀରେ ଜୀବର ଉତ୍ପତ୍ତି, ଜୀବନ କାଳ ଓ ଅବକ୍ଷୟ ସଂପର୍କରେ ଜାଣିହୁଏ। ଜୀବାଶ୍ମ ପରୀକ୍ଷାରୁ କୋଟି କୋଟି ବର୍ଷ ତଳେ ପୃଥିବୀପୃଷ୍ଠରେ ଆତଯାତ ହେଉଥିବା ଜୀବମାନଙ୍କ ସଂପର୍କରେ ବହୁତ ସଠିକ୍ ତଥ୍ୟ ଜଣାପଡ଼େ। ଜୀବାଶ୍ମ ସଂଗ୍ରହ କରିବାପାଇଁ ବିଭିନ୍ନ ପନ୍ଥା ରହିଚ୍ଛି। ସାଧାରଣତଃ ଭୂଗର୍ଭର ବିଭିନ୍ନ ଶିଳାସ୍ତରରୁ ଏହାକୁ ସଂଗ୍ରହ କରାଯାଏ। ଏଥିରୁ ତତ୍କାଳିନ ପରିସ୍ଥିତିରେ ଜୀବନ ଧାରଣ କରିଥିବା ଜୀବର ଆକୃତି ପ୍ରକୃତି ବିଷୟରେ ବହୁ କଥା ଜଣାପଡ଼େ।

ଜୀବାଶ୍ମ ବିଶ୍ଳେଷଣରୁ ବୈଜ୍ଞାନିକମାନେ ବୁଝିପାରିଚ୍ଛନ୍ତି ଯେ ପ୍ରାୟ ୫୭ କୋଟି ବର୍ଷ ତଳେ ଜୀବଜଗତର ସର୍ବପ୍ରଥମ ଜୀବ ଆମୋଇବା **(Amoeba)** ର ସୃଷ୍ଟିହୋଇଥିଲା। ଏହା ଏକ ଏକକୋଷୀ ଜୀବ। ଏହି ଏକକୋଷୀ ଜୀବରୁ କ୍ରମେ ବହୁକୋଷୀ ଜୀବମାନ ସୃଷ୍ଟି ହେଲେ। ପ୍ରାୟ

୩୪.୫ କୋଟି ବର୍ଷ ତଳେ ସମୁଦ୍ର ପାଣିରେ ଜୀବଜଗତର ବହୁଳ ପ୍ରସାର ଘଟିଲା। ପରବର୍ତ୍ତୀ ୧୬ କୋଟି ବର୍ଷ ଭିତରେ ସରୀସୃପମାନଙ୍କର ବିକାଶ ଘଟିଲା। ଏହିଠାରୁ ପ୍ରାୟ ୬.୫ କୋଟି ବର୍ଷ ଧରି ସ୍ତନ୍ୟପାୟୀ ଜୀବମାନେ କ୍ରମଶଃ ଉଦ୍‌ବର୍ତ୍ତନ କ୍ରିୟାରେ ସୃଷ୍ଟି ହେଲେ। ପୃଥିବୀପୃଷ୍ଠରେ ମଣିଷର ଉତ୍ପତ୍ତି ମାତ୍ର ୧୦ ଲକ୍ଷ ବର୍ଷ ତଳର କଥା।

ପ୍ରତ୍ୟେକ ଜୀବନ୍ତ ପଦାର୍ଥର ଜୀବକୋଷ ଗଠନ ପାଇଁ କେତେକ ନିର୍ଦ୍ଦିଷ୍ଟ ରାସାୟନିକ ପଦାର୍ଥ ଆବଶ୍ୟକ। ସେଥିଭିତରୁ ବିଭିନ୍ନ ପ୍ରକାରର ପ୍ରୋଟିନ୍, ଶ୍ୱେତସାର ଓ ଚର୍ବି ଜାତୀୟ ପଦାର୍ଥ ଏକାନ୍ତ ଆବଶ୍ୟକ। ଜଗତରେ ଜୀବନ ସୃଷ୍ଟି ପୂର୍ବରୁ ଏହି ସବୁ ଜୈବ ରାସାୟନିକ ପଦାର୍ଥ ନିଶ୍ଚିତ ଭାବେ ସୃଷ୍ଟିହୋଇଥିବ।

ଏଗୁଡ଼ିକ ସୃଷ୍ଟିହେଲା କିପରି ? — ଏଇ ପ୍ରଶ୍ନର ଉତ୍ତର ଏତେ ସହଜ ନୁହେଁ। ତଥାପି ବୈଜ୍ଞାନିକମାନେ ପରୀକ୍ଷାକରି କହନ୍ତି ଯେ ବାୟୁମଣ୍ଡଳରେ ଘନ ଘନ ବଜ୍ରପାତ ହେତୁ ଯେଉଁ ବୈଦ୍ୟୁତିକ କ୍ରିୟା ପ୍ରତିକ୍ରିୟା ସଂଗଠିତ ହୁଏ, ତହିଁରୁ ଅନେକ ପ୍ରକାରର ମୌଳିକ ଜୈବ ରାସାୟନିକ ପଦାର୍ଥ ସୃଷ୍ଟି ହୋଇପାରେ। ଜୀବଜଗତର ସର୍ବପ୍ରଥମ ଏକକୋଷୀ ଜୀବ ଆମୋଇବାର ସୃଷ୍ଟି ସହିତ ଏହି ବୈଦ୍ୟୁତିକ ପ୍ରକ୍ରିୟାର ସଂପର୍କ ଥିବା ଅନୁମାନ କରାଯାଏ।

ପ୍ରାୟ ୩୫୦ କୋଟି ବର୍ଷ ତଳେ ପୃଥିବୀର ବାୟୁମଣ୍ଡଳ ଆଜି ଭଳି ସରଳ ନଥିଲା। ସେଥିରେ ଆମୋନିଆ, ମିଥେନ୍, ହାଇଡ୍ରୋଜେନ୍ ଓ ପ୍ରଚୁର ଜଳୀୟବାଷ୍ପ ଭରି ରହିଥିଲା। ପୃଥିବୀର ଉତ୍ତାପ ଅତ୍ୟଧିକ ଥିବା ହେତୁ ଜଳ ତରଳ ଅବସ୍ଥାରେ ରହିବା ସମ୍ଭବ ନଥିଲା। ଆକାଶ ସର୍ବଦା ମେଘାଚ୍ଛନ୍ନ ରହୁଥିଲା ଓ ଅନବରତ ବିଜୁଳି ଓ ଘଡ଼ଘଡ଼ି ମାରୁଥିଲା। ଏହି ବୈଦ୍ୟୁତିକ ପ୍ରକ୍ରିୟା ଯୋଗୁ ବାୟୁମଣ୍ଡଳରେ ଥିବା ଆମୋନିଆ, ମିଥେନ୍ ପ୍ରଭୃତି ଉପାଦାନଗୁଡ଼ିକର ରାସାୟନିକ ପରିବର୍ତ୍ତନ ହୋଇ ପ୍ରୋଟିନ୍ ଓ ଶ୍ୱେତସାର ଉତ୍ପନ୍ନ ହେଲା। କ୍ରମଶଃ ବାୟୁମଣ୍ଡଳ ଶୀତଳ ହେବା ପରେ ଜଳ ତରଳ ଅବସ୍ଥାରେ ରହିପାରିଲା। ସମୁଦ୍ରର ଉଷ୍ମ ଜଳରେ ପ୍ରୋଟିନ୍ ଓ ଶ୍ୱେତସାରର ଉପସ୍ଥିତି ମଧ୍ୟରୁ ଏକକୋଷୀ ଜୀବ ଆମୋଇବାର ସୃଷ୍ଟି ସଂଭବ ହୋଇଛି ବୋଲି ବୈଜ୍ଞାନିକମାନେ ମତ ଦିଅନ୍ତି।

---

# ଖରାଦିନେ କୁକୁରମାନେ କାହିଁକି ଏତେ ଧକାନ୍ତି ?

ଖରାଦିନେ ଆମ ଦେହରୁ ଝାଳ ବୁହେ। କିନ୍ତୁ କୁକୁରମାନଙ୍କଠାରୁ ସେତେ ପରିମାଣରେ ଝାଳ ବହେନାହିଁ। ସେମାନଙ୍କ ଦେହରେ ସ୍ୱେଦଗ୍ରନ୍ଥିର ସଂଖ୍ୟା ଖୁବ୍ କମ୍। ସେଥିପାଇଁ ମଣିଷ ବା ଅନ୍ୟାନ୍ୟ ପ୍ରାଣୀମାନଙ୍କ ପରି ଝାଳ ମାଧ୍ୟମରେ କୁକୁରମାନଙ୍କ ଦେହରୁ ଉତ୍ତାପ ସହଜରେ ବାହାରିଯାଏ ନାହିଁ। ଗରମବେଳେ ଦେହରୁ ଝାଳ ନବହିଲେ ଦେହ ଶୀତଳ ହୁଏନାହିଁ। ତେଣୁ ଏଭଳି ପ୍ରାଣୀମାନଙ୍କୁ ଅନ୍ୟ ଉପାୟରେ ଦେହର ତାପ କମାଇବାକୁ ପଡ଼େ। ସେଥିପାଇଁ ସେମାନଙ୍କ ଶରୀରରେ ବିଭିନ୍ନ ବ୍ୟବସ୍ଥା ଥାଏ।

କୁକୁର ଗୋଟିଏ ସ୍ତନ୍ୟପାୟୀ ପ୍ରାଣୀ। ପ୍ରତ୍ୟେକ ସ୍ତନ୍ୟପାୟୀ ପ୍ରାଣୀର ରକ୍ତ ଉଷ୍ଣ। ପୁଣି ରକ୍ତର ତାପମାତ୍ରା ମଧ୍ୟ ନିର୍ଦ୍ଦିଷ୍ଟ। ପରିବେଶର ପରିବର୍ତ୍ତନ ଅନୁସାରେ ଏମାନଙ୍କର ଶରୀରର ତାପମାତ୍ରା ବଢ଼େନା ବା କମେନା। କିନ୍ତୁ ପରିବେଶ ଉଷ୍ଣ ବା ଉତ୍ତପ୍ତ ହେଲେ ଶରୀରର ରକ୍ତ ନିର୍ଦ୍ଦିଷ୍ଟ ତାପମାତ୍ରାରେ ରହିବାପାଇଁ ଶରୀରକୁ ଥଣ୍ଡା କରିବା ଦରକାରପଡ଼େ। ଏଥିପାଇଁ ଦେହରୁ ଝାଳ ବହେ ଓ ପବନ ବାଜି ଝାଳ ଶୁଖିବାଦ୍ୱାରା ଶରୀର ଶୀତଳ ହୁଏ। କୁକୁରମାନଙ୍କ ଦେହରେ ଝାଳଗ୍ରନ୍ଥି କମ୍ ଥିବାରୁ ଏଭଳି ପ୍ରକ୍ରିୟା ସହଜରେ ହୋଇପାରେନାହିଁ। ତେଣୁ ସେମାନଙ୍କୁ ଅନ୍ୟ ଏକ ପ୍ରକ୍ରିୟାର ସାହାଯ୍ୟ ନେବାକୁ ପଡ଼େ। କୁକୁରର ଜିଭ ଶରୀରକୁ ଶୀତଳ ରଖିବାରେ ସାହାଯ୍ୟ କରେ। ସେ ତାର ଲମ୍ବା ଜିଭକୁ ବାହାରକରି ପାଟିବାଟେ ଶୀଘ୍ର ଶୀଘ୍ର ଶ୍ୱାସ ପ୍ରଶ୍ୱାସ ଚଳାଇବା ହେତୁ ଜିଭର ଲାଳ ବାଷ୍ପରେ ପରିଣତ ହୁଏ। ଏହା ଫଳରେ ତା' ଦେହରେ ଜାତ ହେଉଥିବା ଅଧିକା ତାପ କମିଯାଏ। ଆମ ଦେହରୁ ଝାଳ ବୋହି ଶୁଖିଲାବେଳେ ଆମକୁ ଯେଭଳି ଥଣ୍ଡା ଲାଗେ କୁକୁର ସେହିଭଳି ଥଣ୍ଡା ଅନୁଭବ କରେ।

ଏଭଳି ସ୍ୱତନ୍ତ୍ରଧରଣର ଶାରୀରିକ ତାପ ହ୍ରାସ ପ୍ରକ୍ରିୟା ଅନ୍ୟାନ୍ୟ କେତେକ ପ୍ରାଣୀଙ୍କଠାରେ ମଧ୍ୟ ଲକ୍ଷ୍ୟ କରାଯାଏ। ଉଦାହରଣ ସ୍ୱରୂପ— ହାତୀ ଦେହର ଚମ ଖୁବ୍ ମୋଟା ହୋଇଥିବାରୁ ତା' ଦେହରୁ ଝାଳ

ବୋହିପାରେନାହିଁ । ଫଳରେ ଶରୀରରେ ଜାତହେଉଥିବା ତାପ ସହଜରେ ଖଲାସ ହୁଏନାହିଁ । ଏଥିପାଇଁ ହାତୀକୁ ତା'ର କାନ ଦୁଇଟି ଖୁବ୍ ସାହାଯ୍ୟକରେ । ତା'ର ବଡ଼ ବଡ଼ ପତଳା କାନରେ ସ୍ୱେଦ ଗ୍ରନ୍ଥି ବହୁତ ପରିମାଣରେ ଥାଏ । ହାତୀ କାନ ହଲାଇବାଦ୍ୱାରା କାନରୁ ବହୁଥିବା ଝାଳ ଶୁଖି ଦେହ ଥଣ୍ଡା ହୁଏ ।

## ଜିରାଫ୍‌ମାନଙ୍କ ବେକ ଏତେ ଲମ୍ବା କାହିଁକି ?

ପୃଥିବୀର ଯାବତୀୟ ପ୍ରାଣୀମାନଙ୍କ ଭିତରେ ଜିରାଫ୍ ଗୋଟିଏ ଆଖିଦୃଷ୍ଟିଆ ଜୀବ । ଏହାର ଆକାର ବେଶ୍ ବଡ଼ । କିନ୍ତୁ ଆକାର ତୁଳନାରେ ଏହାର ବେକ ଆହୁରି ବଡ଼ । ଏତେବଡ଼ ବେକ ଏ ପ୍ରାଣୀର କେଉଁ କାମରେ ଲାଗେ ?



ପ୍ରାଣୀତତ୍ତ୍ୱବିତ୍ ଲାମାର୍କ ଜିରାଫ୍‌ର ଲମ୍ବା ବେକ ସଂପର୍କରେ କହନ୍ତି ଯେ, ଏକଦା ଏ ପ୍ରାଣୀର ବେକ ଏତେ ଲମ୍ବା ନଥିଲା । କିନ୍ତୁ ମୁହଁ ବଢ଼େଇ ଉଚ୍ଚ ଗଛର ଡାଳମାନଙ୍କରୁ କଅଁଳ ପତ୍ର ଖାଇବାପାଇଁ ଏହାର ଅତ୍ୟଧିକ ଆଗ୍ରହ ଯୋଗୁ କାଳକ୍ରମେ ଏହାର ବେକ ଲମ୍ବ ହୋଇଯାଇଛି । ତାଙ୍କ ମତରେ ଯେଉଁ ପ୍ରାଣୀ ନିଜ ଶରୀରର ଯେଉଁ ନିର୍ଦ୍ଦିଷ୍ଟ ଅଂଶକୁ ଯେତେ ଅଧିକ ବ୍ୟବହାର କରିବ ତାହା ସେତିକି ପରିମାଣରେ ସମୃଦ୍ଧ ହେବ । ଜିରାଫ୍‌ର ଉପରକୁ ମୁହଁ ବଢ଼େଇ ଡାଳ ପତ୍ର ଖାଇବାର ଅଭ୍ୟାସ ଦ୍ୱାରା

ତାହାର ବେକ ସବୁଠାରୁ ବେଶୀ ବ୍ୟବହୃତ ହୁଏ। ପୁରୁଷ ପୁରୁଷ ଧରି ଏହି ଅଭ୍ୟାସର ବଶବର୍ତ୍ତୀ ହେବା ଫଳରେ ଲମ୍ୱା ବେକ ଏହାର ବଂଶଲକ୍ଷଣରେ ପରିଣତ ହୋଇଛି।

ଜିରାଫ୍ ତା'ର ମୁଣ୍ଡ ବଢ଼େଇ ସବୁଠୁ ଉଚ୍ଚ ଗଛର ପତ୍ର ଖାଇପାରେ। ଏହାର ଏକମାତ୍ର ଖାଦ୍ୟ ଗଛର ଡାଳ ପତ୍ର। ଏଥିପାଇଁ ଏହାର ଓଠ ଓ ଜିଭ ମଧ୍ୟ ସ୍ୱତନ୍ତ୍ର ଧରଣର। ଏହାର ଜିଭ ପ୍ରାୟ ୪୫ ସେ:ମି ଲମ୍ୱ। ଉପର ଓଠଟି ମଧ୍ୟ ଅପେକ୍ଷାକୃତ ବଡ଼। ଜିଭ ଓ ଉପର ଓଠ ଦ୍ୱାରା ଡାଳକୁ ଧରି ଜିରାଫ୍ ପତ୍ର ଛିଣ୍ଡେଇ ଖାଇପାରେ।

ଜିରାଫ୍‌ର ଦେହର ଉପର ଛାପିଛାପିକିଆ। ବଣ ଭିତରେ ଠିଆହୋଇଥିଲାବେଳେ ଛାଇ ଆଲୁଅରେ ଏହାକୁ ଦେଖିବା ସହଜ ନୁହେଁ। ଏହା ଫଳରେ ସେ ଆତ୍ମରକ୍ଷା କରିପାରେ। ଏହାର ଶ୍ରବଣଶକ୍ତି ଖୁବ୍ ତୀକ୍ଷ୍ଣ। ବଣ ଭିତରେ ଅତି କ୍ଷୀଣ ଶବ୍ଦକୁ ମଧ୍ୟ ସେ ଶୁଣିପାରେ। ଜିରାଫ୍‌ମାନେ ସାଧାରଣତଃ ବିଶେଷ ଶବ୍ଦ କରନ୍ତି ନାହିଁ। ମାଈ ଜିରାଫମାନେ ବେଳେବେଳେ ଶାବକମାନଙ୍କ ଉଦ୍ଦେଶ୍ୟରେ ଶବ୍ଦ କଲାବେଳେ ଗାଈର ହମ୍ବାରଡ଼ି ପରି ଶୁଭେ। ଏହାର ବାକ୍‌ଯନ୍ତ୍ର ସେତେ ଉନ୍ନତ ନୁହେଁ।

ପରସ୍ପର ମଧ୍ୟରେ ଶବ୍ଦ ଦ୍ୱାରା ସଂକେତ ଆଦାନ ପ୍ରଦାନ କ୍ଷମତା ନଥିବାରୁ ଏମାନଙ୍କର ଦୃଷ୍ଟି ଓ ଘ୍ରାଣଶକ୍ତି ଅତି ପ୍ରଖର। ବିପଦରେ ପଡ଼ିଲେ ଜିରାଫ୍ ବେଶ୍ ଦ୍ରୁତ ଗତିରେ ଦୌଡ଼ିପାରେ। ଏହାର ବେଗ ଘଣ୍ଟା ପ୍ରତି ହାରାହାରି ୪୫ କିଲୋମିଟର। ଦ୍ରୁତଗାମୀ ଘୋଡ଼ାଠାରୁ ମଧ୍ୟ ଏହାର ବେଗ ଅଧିକ। କୌଣସି ପ୍ରାଣୀ ଏହାକୁ ଆକ୍ରମଣ କଲେ ଜିରାଫ୍ ଆତ୍ମରକ୍ଷା ପାଇଁ ତା' ମୁଣ୍ଡ ଓ ପଛଗୋଡ଼ ଯୋଡ଼ିକୁ ବ୍ୟବହାର କରେ। ଏହାର ମୁଣ୍ଡିଆ ଓ ଗୋଡ଼ର ଲାତକୁ ସିଂହ ମଧ୍ୟ ଭୟକରେ।

## ଜେବ୍ରାର ଦେହ ପଟା ପଟା କାହିଁକି ?

ଆଫ୍ରିକାରେ ଏକ ପ୍ରକାର ଜୀବ ବାସକରନ୍ତି, ଯେଉଁମାନେ ଦେଖିବାକୁ ଘୋଡ଼ାଭଳି କିନ୍ତୁ ସେମାନଙ୍କର ଦେହ ଉପରେ ପଟା ପଟା ହୋଇ

ଚିହ୍ନଥାଏ। ଏମାନଙ୍କୁ ଜେବ୍ରା କୁହାଯାଏ। ଏହା ଏକ ଅଶ୍ୱ ଜାତିର ପ୍ରାଣୀ।

ଜେବ୍ରାମାନଙ୍କର ଦେହ ଉପରେ ଥିବା ପଟା ପଟା ଦାଗଗୁଡ଼ିକ କଳା ଓ ବାଦାମି ରଙ୍ଗର। ଏଗୁଡ଼ିକର ପୃଷ୍ଠଭୂମି ଧଳା, ଏମାନେ ତୃଣଭୋଜୀ।



ଏହି ତୃଣଭୋଜୀ ପ୍ରାଣୀଙ୍କର ଦେହ ଉପରେ ପଟା ପଟା ଚିହ୍ନଗୁଡ଼ିକର କାରଣ ସଂପର୍କରେ ଅନେକ ଗୁଡ଼ିଏ ବୈଜ୍ଞାନିକ ତଥ୍ୟ ସଂଗୃହୀତ ହୋଇଛି। କେହି କେହି ବିଶେଷଜ୍ଞଙ୍କ ମତରେ ଜେବ୍ରା ଦେହର ଏଇ କଳାଧଳା ପଟା ପଟା ଚିହ୍ନ ଯୋଗୁ ଜଙ୍ଗଲର ଛାଇ ଆଲୁଅ ଭିତରେ ଏମାନେ ସହଜରେ ମିଶିଯାଇପାରନ୍ତି। ଫଳରେ ଶତ୍ରୁ ଏମାନଙ୍କୁ ସହଜରେ ଠାବ କରିପାରେନାହିଁ। ଜେବ୍ରାର ମୁଖ୍ୟ ଶତ୍ରୁ ହେଲା ସିଂହ। ସିଂହ ଆଖିରୁ ଅଦୃଶ୍ୟ ହୋଇ ରହିବାପାଇଁ ଏହି ଦାଗଗୁଡ଼ିକ ଜେବ୍ରାକୁ ସାହାଯ୍ୟ କରେ। ଅନ୍ୟ କେତେକ ବିଶେଷଜ୍ଞଙ୍କ ମତରେ ଜେବ୍ରାର ଏହି ପଟା ପଟା ରଙ୍ଗ ଯୋଗୁ ସେମାନେ ଏକାଠି ଦଳରେ ଥିଲାବେଳେ ତା' ଭିତରୁ ଗୋଟିକିଆ ଜେବ୍ରାକୁ ଠାବ କରିବା ସିଂହ ପକ୍ଷରେ କଷ୍ଟକର ହୁଏ। ସେଥିପାଇଁ ଦଳ ଭିତରୁ ଗୋଟିକିଆ ଜେବ୍ରାକୁ ସହଜରେ ସିଂହ ଆକ୍ରମଣ କରିପାରେନାହିଁ।

ଜେବ୍ରାମାନେ ପ୍ରାୟ ଦଳଦଳ ହୋଇ ବାସକରନ୍ତି। ଏମାନଙ୍କୁ ପୋଷା ମନାଇବା କଷ୍ଟକର। ତା'ଛଡ଼ା ଏଗୁଡ଼ିକ ବଡ଼ ଲଢୁଆ ଜୀବ। ସେଥିପାଇଁ ସେମାନଙ୍କୁ ଘୋଡ଼ା ଭଳି ତାଲିମ୍ କରାଯାଇପାରେନାହିଁ।

# ବିରାଡ଼ି ଜାତିର କେତେକ ପ୍ରାଣୀ

କଥାରେ ଅଛି ବାଘ ନଦେଖିଲେ ବିରାଡ଼ି ଦେଖ । ଜଙ୍ଗଲରେ ରହୁଥିବା ବାଘ ଯେ ଏକ ପ୍ରକାର ବିରାଡ଼ି ଏ କଥା ହଠାତ୍ ବିଶ୍ୱାସ କରି ହୁଏ ନାହିଁ। କିନ୍ତୁ ପୃଥିବୀରେ ଏହି ବିରାଡ଼ି ଜାତିର ଅନେକ ପ୍ରାଣୀ ଅଛନ୍ତି । ସେମାନେ ହେଲେ – ମହାବଳ ବାଘ, ଚିତାବାଘ, କଲରାପତରିଆ ବାଘ, କେନ୍ଦୁଆ, କଟାଶ ବା ବଣବିରାଡ଼ି, ଜାଗୁଆର, ପୁମା ଇତ୍ୟାଦି ।

ଏହି ବିରାଡ଼ି ଜାତିର ପ୍ରାଣୀ ପୃଥିବୀର ବିଭିନ୍ନ ଅଞ୍ଚଳରେ ଦେଖାଯାନ୍ତି । ଏମାନଙ୍କର ଚେହେରା ଓ ଚାଲିଚଳଣ ପ୍ରାୟ ଏକ ପ୍ରକାର । ଏମାନଙ୍କର ତୀକ୍ଷ୍ଣ ଦାନ୍ତ ଛୁରୀଭଳି କାମ କରେ । ଏମାନଙ୍କର ନଖ ମଧ ତୀକ୍ଷ୍ଣ । ସାଧାରଣତଃ ଏଗୁଡ଼ିକ ମାଂସପେଶି ଯୁକ୍ତ ଥଳି ଭିତରେ ରହିଥାଏ । ଦରକାର ପଡ଼ିଲେ ନଖ ପଦାକୁ ବାହାରି ଆସେ । ପାଦତଳେ ଶକ୍ତ ଓ ନରମ ଗଦିଭଳି ମାଂସପିଣ୍ଡ ଥିବାରୁ ଏମାନେ ଚାଲିଲାବେଳେ ଶବ୍ଦ ହୁଏନାହିଁ। ଏମାନେ ଖୁବ୍ ଚତୁର ଓ ବଳବାନ୍ ଜୀବ । ନିଜ ଓଜନର ବହୁଗୁଣ ଓଜନର ଶିକାରକୁ ଏମାନେ ଅକ୍ଳେଶରେ କାବୁ କରିଦେଇ ପାରନ୍ତି ।



ମହାବଳ ବାଘ ବିରାଡ଼ିଜାତୀୟ ପ୍ରାଣୀଙ୍କ ଭିତରେ ସବୁଠାରୁ ବଡ଼ । ଏହାର ଉଚ୍ଚତା ଏକ ମିଟର ବା ତହିଁରୁ ସାମାନ୍ୟ ବେଶୀ ହୋଇପାରେ । ଲମ୍ବାରେ ଦୁଇ ମିଟର ବା ତହିଁରୁ ଅଧିକ ହୋଇପାରନ୍ତି । ସାଇବେରିଆର ବାଘମାନେ ଲମ୍ବାରେ ଚାରିମିଟର ପର୍ଯ୍ୟନ୍ତ ବଢ଼ିବାର ଦେଖାଯାଇଛି । ବାଘମାନେ

ବିଭିନ୍ନ ପ୍ରାଣୀ ଶିକାର କରି ବଞ୍ଚନ୍ତି। ଏମାନେ ସାଧାରଣତଃ ରାତିରେ ଶିକାର କରନ୍ତି। ବନ୍ୟଜନ୍ତୁ ଶିକାର ପାଇଁ ଅକ୍ଷମ ହେଲେ ବାଘମାନେ ମଣିଷ ଶିକାର କରନ୍ତି। ବାଘମାନଙ୍କର ରଙ୍ଗ ଭିନ୍ନ ଭିନ୍ନ ପ୍ରକାରର। ସାଧାରଣତଃ ଏମାନଙ୍କ ଦେହର ରଙ୍ଗ ବାଦାମି ଓ ତା' ଉପରେ ପଟା ପଟା କଳା ରଙ୍ଗ ଥାଏ। ଧଳାରଙ୍ଗର ବାଘ ମଧ୍ୟ ଅଛନ୍ତି। ମାଈ ବାଘ ଥରକେ ଦୁଇରୁ ଛଅଟି ପର୍ଯ୍ୟନ୍ତ ଛୁଆ ଦେଇଥାଏ।

କଲରାପତରିଆ ବା ପାନ୍‌ଥର୍ ବାଘମାନେ ଆକାରରେ ଛୋଟ। ସାଧାରଣତଃ ଏମାନଙ୍କର ଉଚ୍ଚତା ପ୍ରାୟ ପଚାଶରୁ ଷାଠିଏ ସେ:ମି ଲମ୍ବରେ ୧.୫ ମିଟର ପର୍ଯ୍ୟନ୍ତ ବଢ଼ିପାରନ୍ତି। ଏମାନେ ମହାବଳ ବାଘ ପରି ଏସିଆ ଓ ଆଫ୍ରିକାରେ ଦେଖାଯାନ୍ତି। ଏମାନେ ମହା ଶକ୍ତିଶାଳୀ ଜୀବ।

ଚିତାବାଘ ସବୁଠାରୁ ଦ୍ରୁତଗାମୀ ଜୀବ। ଏହାର ସର୍ବୋଚ୍ଚ ଗତି ଘଣ୍ଟାକୁ ୧୧୦ କିଲୋମିଟର। ଏ ଗଛ ଚଢ଼ିପାରେ। ଭାରତ, ଚୀନ, ତୁର୍କୀ ପ୍ରଭୃତି ଦେଶରେ ଏ ବାଘ ଦେଖାଯାନ୍ତି।

## ଲେମିଂ ମୂଷାମାନେ ଆତ୍ମହତ୍ୟା କରନ୍ତି କାହିଁକି ?

ଲେମିଂ ଏକ ପ୍ରକାରର ଧୂସରିଆ ମୂଷା। ରୁହନ୍ତି ଉତ୍ତର-ଗୋଲାର୍ଦ୍ଧର ଆଲାସ୍କା, ଉତ୍ତର-ପଶ୍ଚିମ କାନାଡ଼ା, ନରୱେ, ସୁଇଡ଼େନ୍ ଏଇ ସବୁ ଅଞ୍ଚଳରେ। ପାଞ୍ଚ ଛଅ ଇଞ୍ଚର ଥାକୁଲଥୁକୁଳ ଲାଙ୍ଗୁଡ଼ଖଣ୍ଡି ମୂଷାଗୁଡ଼ିକ। ଥଣ୍ଡା ଜାଗା ତ, ତେଣୁ ଦେହ ତ ଦେହ ଗୋଡ଼ରେ ବି ତାଙ୍କର ବହଳ ରୁମ। ମାଟି ଉପରେ ଶୁଖିଲା ଘାସ ଗଦା କରି ଘର ତିଆରି କରି ରୁହନ୍ତି। ଚେର, ମୂଳ, ଶିଉଳି ଏଇହେଲା ଆହାର।

ମାଈ ଲେମିଂ ବର୍ଷକୁ ଦୁଇଥର ଆଉ ଥରକେ ତିନୋଟିରୁ ପାଞ୍ଚଟି ପର୍ଯ୍ୟନ୍ତ ଛୁଆ ଦେଇଥାଏ। କିନ୍ତୁ ପ୍ରତି ତିନି-ଚାରି ବର୍ଷରେ ସେ ଥରକେ ଦଶରୁ ଅଧିକ ଛୁଆ ଜନ୍ମ କରେ। ଏହାଫଳରେ ହଠାତ୍ ସେମାନଙ୍କ ସଂଖ୍ୟା ଏତେ ବେଶି ବଢ଼ିଯାଏ ଯେ ସେ ଅଞ୍ଚଳରେ ସେମାନଙ୍କ ପାଇଁ ଖାଦ୍ୟର ଅଭାବ ପଡ଼େ। ତେଣିକି ସେମାନଙ୍କର ବଞ୍ଚିବା କଷ୍ଟକର ହୋଇଯାଏ।

ତା'ପରେ ସେମାନେ ସତେକି ପ୍ରକୃତି ପରିଚ଼ାଳିତ ହୋଇ ସେ ଜାଗା ଛାଡ଼ିବାପାଇଁ ପ୍ରସ୍ତୁତ ହୋଇଯାନ୍ତି ।

ସମୁଦ୍ରର ବାସ୍ନା ସେମାନଙ୍କୁ ଉଚ୍ଚାଟ କରେ । ବାଟର ସବୁ ପ୍ରତିବନ୍ଧକ ଏଡ଼େଇ ଧୀରେସୁସ୍ଥେ ଆଗେଇ ଚାଲନ୍ତି ସେମାନେ ଯୁଦ୍ଧକ୍ଷେତ୍ରକୁ ଯାଉଥିବା ଏକ ବିରାଟ ଶୃଙ୍ଖଳିତ ସୈନ୍ୟଦଳ ପରି । ବାଟରେ ଯାହା ପଡ଼େ ଖେତ ଖମାର ଉଜାଡ଼ି ଦେଇ ଯାଆନ୍ତି । ଝରଣା ହ୍ରଦ ଯାହା ପଡ଼ିଲା ପହଁରି ପାରି ହୋଇଯାଆନ୍ତି । ବାଟରେ ମରନ୍ତି ବି ଅନେକ । କିନ୍ତୁ କି ଅଦ୍ଭୁତ ଜିଦି— ଲକ୍ଷ୍ୟ ସେମାନଙ୍କର ସେଇ ସମୁଦ୍ର ।

ଶେଷକୁ ଯେତେବେଳେ ସମୁଦ୍ର କୂଳରେ ପହଞ୍ଚନ୍ତି କ'ଣ ହୁଏ ସେମାନଙ୍କର କେଜାଣି ଦଳଦଳ ହୋଇ ସମୁଦ୍ର ଭିତରକୁ ଡେଇଁପଡ଼ନ୍ତି । ପନ୍ଦର କୋଡ଼ିଏ ମିନିଟ୍‌କାଳ ବେଶ୍ ପହଁରନ୍ତି, ଆଉ ତା'ପରେ ସମୁଦ୍ରର ଢେଉ ସେମାନଙ୍କୁ ଭସେଇ ନିଏ ଓ ସେମାନେ ବୁଡ଼ିମରନ୍ତି । ଗୋଟିଏ ହେଲେ ଲେମିଂ ଏ ଯାତ୍ରାରୁ ଫେରିଆସିବା କେବେ ଦେଖାଯାଇନାହିଁ ।

ଜୀବବିଜ୍ଞାନୀମାନେ ଏଇ ସିଦ୍ଧାନ୍ତରେ ପହଞ୍ଚୁଚ଼ନ୍ତି ଯେ ପ୍ରକୃତି ଏଇ କୁନି କୁନି ମୂଷାଟିମାନଙ୍କ ଭିତରେ ବି ଚାବିକାଠିଟିଏ ଖଞ୍ଜିଚ଼ି । ସେମାନଙ୍କ ସଂଖ୍ୟା ବଢ଼ିଲା ତ ସମତା ରକ୍ଷା କରିବାପାଇଁ କାମୁଡ଼ା କାମୁଡ଼ି ହୋଇ ନମରି ସେମାନେ ସମୁଦ୍ରରେ ଆତ୍ମହତ୍ୟା କରନ୍ତି ।

## ମାଛମାନେ ଶୁଣିପାରନ୍ତି କି ?

ମାଛମାନେ ନିଃଶବ୍ଦରେ ପାଣିରେ ପହଁରନ୍ତି । ଅର୍ଥାତ୍ ସେମାନେ ପହଁରିଲାବେଳେ କିଛି ଶବ୍ଦ ଆମେ ଶୁଣିପାରୁ ନାହିଁ । କିନ୍ତୁ ଆଶ୍ଚର୍ଯ୍ୟ କଥା ସେମାନେ ପାଣି ଭିତରେ ଆମ ଗତିର ଶବ୍ଦ ବେଶ୍ ଶୁଣିପାରନ୍ତି । ସେମାନଙ୍କର ଶ୍ରବଣଶକ୍ତି ଭାରି ପ୍ରଖର । ତାଙ୍କର ଦୁଇଟି କାନ । ଆମ ପରି ତାଙ୍କ କାନ ବାହାରକୁ ବାହାରି ନଥାଏ । କିନ୍ତୁ ମୁଣ୍ଡର ଦୁଇପଟରେ ଦୁଇଟି ଛୋଟ କଣା ତାଙ୍କ ଭିତର କାନ ପର୍ଯ୍ୟନ୍ତ ଲମ୍ବିଥାଏ । ଆମ ବାହାର କାନ ଶବ୍ଦର ଗତି ନିୟନ୍ତ୍ରଣ କରେ । ମାତ୍ର ମାଛର ବାହାର

କାନ ନଥିବାରୁ ତା' କାନ ଆମ କାନ ପରି ଏତେ ଶକ୍ତିଶାଳୀ ନହେଲେ ବି ପାଣି ତରଙ୍ଗର ହଲଚଲରୁ ସେ ଶବ୍ଦ ବାରିପାରେ ।

ମାଛ ଦେହର ଦୁଇପଟେ ଧାଡ଼ି ହୋଇ ଗୁଡ଼ିଏ ଛିଦ୍ର ବା କଣା ଥାଏ । ଏହି ଛିଦ୍ରମାନେ ପାଣିରେ ତରଙ୍ଗ ଓ ଚାପର ପରିବର୍ତ୍ତନର ଖବର ମସ୍ତିଷ୍କକୁ ପଠାଇଦିଅନ୍ତି । ଏ ଛିଦ୍ରଧାଡ଼ିକୁ ଆମେ ଖାଲି ଆଖିରେ ଦେଖିପାରୁ । ଏ ଛିଦ୍ରଧାଡ଼ି ମାଛକୁ ଆତ୍ମରକ୍ଷା କରିବାରେ ସାହାଯ୍ୟ କରେ । ଅନ୍ୟ ମାଛ ବା କୌଣସି ବସ୍ତୁ ଦ୍ୱାରା ହେଉଥିବା ପାଣିଚାପର ପରିବର୍ତ୍ତନକୁ ଏହି ଛିଦ୍ରମାନଙ୍କଦ୍ୱାରା ଜାଣିପାରି ମାଛ ସେ ବିପଦଠାରୁ ଦୂରେଇଯାଇପାରେ ।

ମାଗୁର, ରଡା, ଗଡ଼ିଶା ପ୍ରଭୃତି ମାଛମାନେ ସାଧାରଣତଃ କାଦୁଅ ପଙ୍କରେ ରହନ୍ତି । ଏମାନଙ୍କର ମୁହଁ ଚାରିପଟେ ସରୁ ସରୁ ନିଶ ରହିଥାଏ । ଏଗୁଡ଼ିକ ପ୍ରକୃତରେ ନିଶ ନୁହଁ । ଏହାଦ୍ୱାରା ସେମାନେ ତାଙ୍କ ପାରିପାର୍ଶ୍ୱିକ ଅବସ୍ଥା ଅନୁଭବ କରିପାରନ୍ତି ।

କାର୍ପ ଜାତୀୟ ମାଛମାନଙ୍କ ମୁଣ୍ଡ ଭିତରେ କେତେଗୁଡ଼ିଏ ଛୋଟ ଛୋଟ ହାଡ଼ ଥାଏ । ଏଗୁଡ଼ିକ ସେମାନଙ୍କ ଶରୀରରେ ଥିବା ପୁଟି ଥଳୀ ସହିତ ସଂଯୁକ୍ତ ହୋଇଥାଏ । ବାୟୁପୂର୍ଣ୍ଣ ଏହି ଥଳୀ ଯୋଗୁଁ ମାଛମାନେ ପାଣିରେ ସିଧା ହୋଇ ଭାସିପାରନ୍ତି ଏବଂ ଏହାଦ୍ୱାରା ସେମାନେ ତାଙ୍କ ଚାରିପାଖେ ପାଣି ଭିତରେ ହେଉଥିବା ସାମାନ୍ୟତମ ସ୍ପନ୍ଦନକୁ ମଧ ଠଉରାଇପାରନ୍ତି । ଏହି ସ୍ପନ୍ଦନ ମାଛର ପୁଟି ଥଳୀ ସହିତ ସଂଯୁକ୍ତ ଛୋଟ ଛୋଟ ହାଡ଼ ଜରିଆରେ ବହୁ ଗୁଣିତ ହୋଇ ଭିତର କାନ ପର୍ଯ୍ୟନ୍ତ ଚାଲିଯାଏ । ଏହାଦ୍ୱାରା ମାଛ ବାହାରର ଧ୍ୱନି ଶୁଣିପାରେ । ଏଥିରୁ ଜଣାଯାଏ ଯେ ମାଛର ଶ୍ରବଣେନ୍ଦ୍ରିୟ ଅଛି ଓ ତାହା ଅତି ତୀକ୍ଷ୍ଣ ।

## ଜୁଳୁଜୁଳିଆ ପୋକ ଆଲୋକ ଦିଏ କିପରି ?

ବର୍ଷାଦିନେ ଅନ୍ଧାର ରାତିରେ ଜୁଳୁଜୁଳିଆ ପୋକ ବହୁ ସଂଖ୍ୟାରେ ଉଡ଼ିବା ଦେଖାଯାଏ । ସେମାନଙ୍କୁ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ମନକୁ ମନ ଆମେ ପଚାରୁ– ଜୁଳୁଜୁଳିଆ ପୋକର ଏ ଆଲୋକ ଆସେ

କୁଆଡୁ? ଏହା ଏକ ବୈଜ୍ଞାନିକ ପ୍ରଶ୍ନ। ଏହାର ସମାଧାନ ପାଇଁ ବୈଜ୍ଞାନିକମାନେ ନାନାପ୍ରକାର ପରୀକ୍ଷାନିରୀକ୍ଷା କରିଚ଼ନ୍ତି।

ଏହା ଏକ ଜାତିର ପତଙ୍ଗ। ଏମାନଙ୍କର ଡେଣା ଅଛି, ଏମାନଙ୍କର ଦେହର ରଙ୍ଗ କଳା ଓ ଛୁଇଁଲେ ନରମ ଲାଗେ। ମହୁମାଛି ପରି ଏମାନେ ଫୁଲରୁ ମହୁଖାଇ ବଞ୍ଚନ୍ତି। ଯେଉଁ ଗଛରେ ବଉଳ ହୋଇଥାଏ ବା ଫୁଲ ଧରିଥାଏ ସେସବୁ ଗଛରେ ଏମାନେ ରାତିରେ ବେଢ଼ି ରହନ୍ତି। ଏମାନଙ୍କ ପେଟତଳୁ ଆଲୋକ ଧପ୍ ଧପ୍ ହୋଇ ବାହାରିବା ଦେଖାଯାଏ। ଶରୀରର ଏହି ଅଂଶର ରାସାୟନିକ ପରୀକ୍ଷାରୁ ଜଣାଯାଇଛି ଯେ ଜୁଳୁଜୁଳିଆ ପୋକର ଆଲୋକ ପ୍ରଦାନ କ୍ଷମତା ମୂଳରେ ଏକ ନିର୍ଦ୍ଦିଷ୍ଟ ରାସାୟନିକ ପ୍ରତିକ୍ରିୟା ରହିଥାଏ। ଏହି ପ୍ରତିକ୍ରିୟା ଦୁଇଟି ରାସାୟନିକ ପଦାର୍ଥକୁ ନେଇ ଘଟେ। ତାହା ହେଲା– ଲୁସିଫେରିନ୍ ଓ ଲୁସିଫେରେଜ୍। ଏଥିମଧ୍ୟରୁ ପ୍ରଥମଟି ସହିତ ଅମ୍ଳଜାନର ସଂଯୋଗ ଘଟିଲେ ଆଲୋକ ସୃଷ୍ଟି ହୁଏ। ଦ୍ୱିତୀୟ ରାସାୟନିକ ପଦାର୍ଥ ଅର୍ଥାତ୍ ଲୁସିଫେରେଜ୍ ପୂର୍ବୋକ୍ତ ରାସାୟନିକ ପ୍ରକ୍ରିୟାକୁ ସାହାଯ୍ୟ କରେ। ତେଣୁ ଏହା ଏକ ଦ୍ରବକ ଭଳି କାର୍ଯ୍ୟକରେ। ଏହି ରାସାୟନିକ କ୍ରିୟା ଦ୍ୱାରା ଉତ୍ପାଦିତ ଆଲୋକ ଶୀତଳ। ଏଥିରୁ ତାପ ନିର୍ଗତ ହୁଏନାହିଁ।

ବୈଜ୍ଞାନିକମାନେ ଜୁଳୁଜୁଳିଆ ପୋକ ଶରୀରରୁ ଲୁସିଫେରିନ୍ ଓ ଲୁସିଫେରେଜ୍ ପଦାର୍ଥ ଦୁଇଟିକୁ ସଂଗ୍ରହ କରି ବିଜ୍ଞାନାଗାରରେ ସେହିପରି ଆଲୋକ ସୃଷ୍ଟି କରି ପାରୁଛନ୍ତି। ଏହି ଆଲୋକର ରଙ୍ଗ ହଳଦିଆ ବା ନାରଙ୍ଗି।

ଜୁଳୁଜୁଳିଆ ପୋକର ଆଲୋକ ତାକୁ କିପରି ସାହାଯ୍ୟ କରେ– ସମ୍ଭବତଃ ଏମାନଙ୍କର ଏହି ଆଲୋକ ଦେଖି ନିଶାଚ଼ର ପକ୍ଷୀ ବା ଅନ୍ୟ ଶତ୍ରୁମାନେ ଏମାନଙ୍କୁ ଆକ୍ରମଣ କରନ୍ତି ନାହିଁ। ଉଭୟ ପୁରୁଷ ଓ ସ୍ତ୍ରୀ ଜୁଳୁଜୁଳିଆ ପୋକର ଆଲୋକ ଦେବାର କ୍ଷମତା ଥାଏ। ଏମାନେ ପରସ୍ପରକୁ ଏହି ଆଲୋକଦ୍ୱାରା ଆକୃଷ୍ଟ କରନ୍ତି।

—

# ବାଦୁଡ଼ି ଅନ୍ଧାରରେ ବାଟ ଚିହ୍ନେ କିପରି ?

ବାଦୁଡ଼ିମାନେ ନିଶାଚର ଜୀବ। ଏମାନେ ରାତିରେ ଚରାବୁଲା କରନ୍ତି ଓ ଦିନବେଳେ ନିଦ୍ରାଯାନ୍ତି। ଅନ୍ଧାରରେ ଉଡ଼ିଲାବେଳେ ଏମାନେ ବେଶ୍ ଦ୍ରୁତ ଗତିରେ ଯିବାର ଦେଖାଯାଏ। ସେତେବେଳେ ସେମାନଙ୍କ ଆଗରେ ଯାହା କିଛି ପ୍ରତିବନ୍ଧକ ଥାଉ ପଛେ ସେଥିରେ ଧକ୍କା ଖାଆନ୍ତି ନାହିଁ। ଗଛବୃକ୍ଷ, ବିଦ୍ୟୁତ୍ ଖୁଣ୍ଟ, ଟେଲିଫୋନ୍ ତାର କେଉଁଥିରେ ଛନ୍ଦି ନହୋଇ ଏମାନେ ଏତେ ସହଜରେ କିପରି ଉଡ଼ି ବୁଲି ପାରନ୍ତି? ଅନ୍ୟ କୌଣସି ପକ୍ଷୀ ବା ପ୍ରାଣୀ ବାଦୁଡ଼ିପରି ଅନ୍ଧାରରେ ଏପରି ନିର୍ବିଘ୍ନରେ ଓ ଦ୍ରୁତଗତିରେ ଚଳପ୍ରଚଳ ହେବା ଦେଖାଯାଏ ନାହିଁ। ବାଦୁଡ଼ିର ଏ ସ୍ୱଚ୍ଛନ୍ଦ ଗତି ପଛରେ କି ରହସ୍ୟ ରହିଚି? ଏହା କଅଣ ତା' ଆଖିର କରାମତି? ଅନ୍ଧାରରେ ବାଟ ଦେଖିବା ପାଇଁ ବାଦୁଡ଼ିର ଆଖି କ'ଣ ସତରେ କିଛି କାମ କରେ?



ବୈଜ୍ଞାନିକମାନେ ବାଦୁଡ଼ିର ଦୃଷ୍ଟିଶକ୍ତି ଉପରେ ପ୍ରଥମେ ପରୀକ୍ଷା କରି ଦେଖିଚନ୍ତି ଯେ ଆଖି ବନ୍ଦଥିବା ଅବସ୍ଥାରେ ମଧ ବାଦୁଡ଼ି ସ୍ୱାଭାବିକଭାବେ ଉଡ଼ିପାରେ। ଏହି ପରୀକ୍ଷା ପାଇଁ ସେମାନେ କେତେକ ବାଦୁଡ଼ିଙ୍କୁ ଧରି ତାଙ୍କ ଆଖି ଉପରେ ପଟି ବାନ୍ଧି ଦେଲେ ଓ ଗୋଟିଏ ଆବଦ୍ଧ ଘର

ଭିତରେ ସେମାନଙ୍କୁ ଛାଡ଼ିଦେଲେ। ପୂର୍ବରୁ ଏହି ଘର ଛାତରୁ ଅନେକଗୁଡ଼ିଏ ଦଉଡ଼ି ବିଭିନ୍ନ ସ୍ଥାନରୁ ଝୁଲେଇ ଦିଆଯାଇଥାଏ। ଆଖି ବନ୍ଦଥିବା ବାଦୁଡ଼ିମାନଙ୍କୁ ସେଇ ଘର ଭିତରେ ଛାଡ଼ିଦେବାକ୍ଷଣି ସେମାନେ ଉଡ଼ିବୁଲିଲେ। ଆଶ୍ଚର୍ଯ୍ୟର କଥା, ସେମାନେ ଉଡ଼ିଲାବେଳେ ଛାତରୁ ଝୁଲୁଥିବା ଦଉଡ଼ି ବା ଅନ୍ୟ କୌଣସି ପ୍ରତିବନ୍ଧକ ସହିତ ଧକ୍କାଖାଇବାର ଦେଖାଗଲା ନାହିଁ। ଏଥିରୁ ସ୍ପଷ୍ଟ ବୁଝାପଡ଼ିବ ଯେ ଅନ୍ଧାରରେ ବାଟ ଚିହ୍ନିବା ପାଇଁ ବାଦୁଡ଼ି ନିଜ ଆଖିର ବ୍ୟବହାର କରେ ନାହିଁ।

ଏହାପରେ ବୈଜ୍ଞାନିକମାନେ ବାଦୁଡ଼ିମାନଙ୍କୁ ନେଇ ଆଉ ଏକ ପ୍ରକାର ପରୀକ୍ଷା କଲେ। ଏଥର ସେମାନଙ୍କ ପାଟି ଓ କାନକୁ ପଟି ବାନ୍ଧି ବନ୍ଦ କରି ଦିଆଗଲା ଓ ସେହି ଘର ଭିତରେ ଉଡ଼ିବାକୁ ଛାଡ଼ିଦିଆଗଲା। ଏଥର ଦେଖାଗଲା ବାଦୁଡ଼ିମାନେ ଛାତରୁ ଟଙ୍ଗାହୋଇଥିବା ଦଉଡ଼ି ଓ କାନ୍ଥ ଦେହରେ ବାରମ୍ବାର ଧକ୍କା ଖାଇବାରେ ଲାଗିଲେ। ଏହି ପରୀକ୍ଷାରୁ ଜଣାପଡୁଛି ଯେ, ଅନ୍ଧାରରେ ଉଡ଼ିବାପାଇଁ ବାଦୁଡ଼ିମାନେ ଆଖି ପରିବର୍ତ୍ତେ ପାଟି ଓ କାନର ବ୍ୟବହାର କରିଥାନ୍ତି। ଏହା କିପରି ?

ବାଦୁଡ଼ିମାନେ ଉଡ଼ିଲାବେଳେ ପାଟିରେ ଏକ ପ୍ରକାର ତୀବ୍ର ସ୍ପନ୍ଦନ ବିଶିଷ୍ଟ ଶବ୍ଦତରଙ୍ଗ ସୃଷ୍ଟିକରନ୍ତି। ସ୍ପନ୍ଦନର ତୀବ୍ରତା ଏତେ ବେଶି ଯେ ତଦ୍ୱାରା ଶବ୍ଦ ତରଙ୍ଗ ଆମ କାନକୁ ଶୁଭେ ନାହିଁ। ଏହି ଅଶୁଣା ଶବ୍ଦତରଙ୍ଗକୁ ଅଲଟ୍ରାସୋନିକ୍ ତରଙ୍ଗ କୁହାଯାଏ। ଉଚ୍ଚ ସ୍ପନ୍ଦନ ବିଶିଷ୍ଟ ଶବ୍ଦତରଙ୍ଗ ସରଳରେଖାରେ ଗତି କରେ। ବାଦୁଡ଼ି ଉଡ଼ିଲାବେଳେ ନିଜ ପାଟିରେ ଏହି ଉଚ୍ଚ ସ୍ପନ୍ଦନ ବିଶିଷ୍ଟ ଶବ୍ଦ ତରଙ୍ଗ ସୃଷ୍ଟିକରେ। ଏହି ତରଙ୍ଗ ଦ୍ରୁତଗତିରେ ଆଗେଇ ଯାଇ ସାମ୍ନାର ପ୍ରତିବନ୍ଧକରେ ଧକ୍କା ଖାଇ ଫେରି ଆସିଲା ପରେ ବାଦୁଡ଼ି ତାହାକୁ କାନଦ୍ୱାରା ଗ୍ରହଣ କରେ। ବାଦୁଡ଼ିର ଶ୍ରବଣ ଶକ୍ତି ମଧ୍ୟ ଅଲଟ୍ରାସୋନିକ୍ ଶବ୍ଦ ତରଙ୍ଗ ଗ୍ରହଣ କରିବାପାଇଁ ସକ୍ଷମ। ଉଡ଼ିବା ବାଟରେ ଯେ କୌଣସି ପ୍ରତିବନ୍ଧକ ଆସିବାର ବହୁ ପୂର୍ବରୁ ବାଦୁଡ଼ି ଏହି ଉପାୟରେ ସେଗୁଡ଼ିକୁ ଠିକ୍‌ଠିକ୍ ଚିହ୍ନଟ କରି ବାଟକାଟି ଚାଲିଯାଏ।

ଅନ୍ଧାରରେ ବାଟ ଦେଖିବାପାଇଁ ବାଦୁଡ଼ି ତା' ଆଖିର ବ୍ୟବହାର ନକଲେ ମଧ୍ୟ ଖାଦ୍ୟ ପଦାର୍ଥ ଦେଖିବାପାଇଁ ତାର ଆଖି ଦରକାର।

ଅତି ଛୋଟ ଛୋଟ କୀଟପତଙ୍ଗ, ମଶା, ମାଛି ପ୍ରଭୃତିକୁ ବାଦୁଡ଼ି ଅନ୍ଧାରରେ ଦେଖିପାରେ ଓ ଆହାର କରେ।

## ବହୁରୂପା ରଙ୍ଗ ବଦଳାଏ କିପରି ?

ବହୁରୂପା ବା ଚାମେଲିଅନ୍ ଏକପ୍ରକାର ଏଣ୍ଟୁଅ। ଦରକାର ପଡ଼ିଲେ ଏମାନେ ନିଜର ରଙ୍ଗ ବଦଳେଇ ପାରନ୍ତି। ବହୁପ୍ରକାର ରଙ୍ଗ ଧାରଣ କରିପାରୁଥିବାରୁ ଏମାନଙ୍କୁ ବହୁରୂପା କୁହାଯାଏ। ଏମାନଙ୍କର ରଙ୍ଗ ପରିବର୍ତ୍ତନ ଏକ ଶାରୀରିକ ଗୁଣ ଯାହା ଅନ୍ୟଜାତିର ଏଣ୍ଟୁଅଙ୍କର ନଥାଏ।

ବହୁରୂପା ଚର୍ମର ଉପର ସ୍ତର ସ୍ୱଚ୍ଛ। ଏହାର ଠିକ୍ ତଳସ୍ତରରେ ଯେଉଁ ଜୀବକୋଷଗୁଡ଼ିକ ଥାଏ ସେଥିରେ କଳା, ଲାଲ୍, ହଳଦିଆ ପ୍ରଭୃତି ବର୍ଣ୍ଣକଣିକାମାନ ରହିଥାଏ। ଏହି ବର୍ଣ୍ଣକଣିକାଗୁଡ଼ିକ ଚର୍ମ ତଳେ ତଳେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଅତି ସହଜରେ ଘୁଞ୍ଚିଯାଇପାରନ୍ତି। ଚର୍ମ ତଳର ଜୀବକୋଷଗୁଡ଼ିକର ପ୍ରସାରଣ ବା ସଂକୋଚନ ଦ୍ୱାରା ବର୍ଣ୍ଣକଣିକାଗୁଡ଼ିକ ବହୁ ପରିମାଣରେ ଏକତ୍ରିତ ହୋଇପାରନ୍ତି। ବର୍ଣ୍ଣକଣିକାର ଏହି ଏକତ୍ରୀକରଣ ଦ୍ୱାରା ବହୁରୂପାର ରଙ୍ଗ ପୂରାପୂରି କଳା ହୋଇଯାଇପାରେ। ପୁଣି ବର୍ଣ୍ଣକଣିକାଗୁଡ଼ିକ ଚର୍ମ ତଳେ ତଳେ ଦେହସାରା ଖେଳେଇ ହୋଇଗଲେ ଅନ୍ୟାନ୍ୟ ରଙ୍ଗ ସୃଷ୍ଟି ହୁଏ।

ଚମତଳର ଜୀବକୋଷଗୁଡ଼ିକୁ ବହୁରୂପା କିପରି ପ୍ରସାରିତ ବା ସଂକୁଚିତ କରେ ? ବହୁରୂପାର ରଙ୍ଗ ପରିବର୍ତ୍ତନ ସହିତ ତା' ଦେହର ସ୍ନାୟୁମଣ୍ଡଳର ସଂପର୍କ ରହିଥାଏ। ଜୀବଟି ଡରିଗଲେ ବା ରାଗିଗଲେ ତା'ର ସ୍ନାୟୁମଣ୍ଡଳରେ ଯେଉଁ ପ୍ରତିକ୍ରିୟା ହୁଏ ତଦ୍ୱାରା ଚର୍ମତଳର ଜୀବକୋଷଗୁଡ଼ିକ ସଂପ୍ରସାରିତ ବା ସଂକୁଚିତ ହୁଏ। ବହୁରୂପା ରାଗିଗଲେ ତା' ରଙ୍ଗ କଳା ହୋଇଯାଏ। ଡରିଗଲେ ବା ଉତ୍ତେଜିତ ହୋଇଗଲେ ତା' ରଙ୍ଗ ହଳଦିଆ ଦିଶେ। ଏହିପରି ଶାରୀରିକ ବା ମାନସିକ ଅବସ୍ଥା ଅନୁସାରେ ବହୁରୂପାର ରଙ୍ଗ ବଦଳେ। ସୂର୍ଯ୍ୟକିରଣଦ୍ୱାରା ବହୁରୂପାର ରଙ୍ଗ ପରିବର୍ତ୍ତନ ହେବା ମଧ୍ୟ ଦେଖାଯାଏ। ଅତ୍ୟଧିକ ଖରାରେ ଏହାର ରଙ୍ଗ କଳା ପଡ଼ିଯାଏ। ଗରମ

ଓ ଅନ୍ଧାରୁଆ ଜାଗାରେ ଏହାର ରଙ୍ଗ ସବୁଜ ହୁଏ; କିନ୍ତୁ ଅନ୍ଧାରରେ ତାପମାତ୍ରା କମ୍ ଥିଲେ ରଙ୍ଗ ହଳଦିଆ ହୁଏ। ଏଣୁ ବାରମ୍ବାର ରଙ୍ଗ ପରିବର୍ତ୍ତନ ପାଇଁ ତା'ର ସ୍ନାୟବିକ ପ୍ରତିକ୍ରିୟା ସହିତ ତାପମାତ୍ରା, ଆଲୋକ ଓ ଅନ୍ଧାରର ସଂପର୍କ ରହିଛି। ଆତ୍ମରକ୍ଷାପାଇଁ ବହୁରୂପୀର ଏହି ରଙ୍ଗ ପରିବର୍ତ୍ତନ ବହୁ ସାହାଯ୍ୟ କରେ। ସାପ ବା ଚଢ଼େଇମାନେ ବହୁରୂପୀର ଶତ୍ରୁ। ଦେହର ରଙ୍ଗ ବଦଳାଇ ବହୁରୂପୀ ଏମାନଙ୍କ ଦାଉରୁ ନିଜକୁ ରକ୍ଷାକରେ।

## ଶୀତଦିନେ ବେଙ୍ଗମାନେ ଯାଆନ୍ତି କୁଆଡ଼େ ?

ବେଙ୍ଗ ଗୋଟିଏ ବିଚିତ୍ର ଜୀବ। ଏ ଜୀବ ଜଳ ଓ ସ୍ଥଳ ଉଭୟ ସ୍ଥାନରେ ବାସ କରିପାରେ। ତେଣୁ ଏହାକୁ ଉଭୟଚର ପ୍ରାଣୀ କୁହାଯାଏ। ଏମାନେ ସାଧାରଣତଃ ନଈ, ନାଳ, ଗାଡ଼ିଆ, ପୋଖରୀ ନିକଟରେ ବାସକରନ୍ତି। ବର୍ଷାଦିନ ଆରମ୍ଭରେ ଏମାନଙ୍କର ସ୍ୱର ଚତୁର୍ଦ୍ଦିଗରୁ ଶୁଣାଯାଏ। କାରଣ ଏମାନେ ବର୍ଷା ପାଣିକୁ ଭଲପା'ନ୍ତି ଓ ଏହି ବର୍ଷାଋତୁରେ ସେମାନେ ବଂଶ ବିସ୍ତାର କରନ୍ତି। ଏ ସମୟରେ ରାସ୍ତାଘାଟ ସବୁଆଡ଼େ ବେଙ୍ଗମାନଙ୍କୁ ଦେଖିବାକୁ ମିଳେ। କିନ୍ତୁ ଶୀତଦିନ ଆରମ୍ଭରୁ ଏମାନେ ଧୀରେ ଧୀରେ ଅଦୃଶ୍ୟ ହେବାକୁ ଆରମ୍ଭ କରନ୍ତି।

ଅକ୍ଟୋବରରୁ ଫେବୃୟାରୀ ମାସ ମଧ୍ୟରେ ବେଙ୍ଗମାନେ ଶୀତଋତୁଟି କେଉଁଠି କଟାନ୍ତି? ବେଙ୍ଗମାନେ ଶୀତ ସହି ପାରନ୍ତି ନାହିଁ। ଏମାନଙ୍କର ରକ୍ତ ଥଣ୍ଡା। ପରିବେଶର ତାପମାତ୍ରା ଅନୁସାରେ ଶରୀରର ତାପମାତ୍ରା ବଦଳେ। ଶୀତଋତୁରେ ବାୟୁମଣ୍ଡଳର ତାପମାତ୍ରା ଧୀରେ ଧୀରେ କମିବାକୁ ଆରମ୍ଭ କରେ। ଏହା ଫଳରେ ବେଙ୍ଗମାନଙ୍କର ରକ୍ତର ତାପମାତ୍ରା ମଧ୍ୟ ସେହିଭଳି କମିଯାଏ। ତାପମାତ୍ରା ଅଧିକ କମିଗଲେ ବେଙ୍ଗର ଦୈହିକ ଶକ୍ତି ଓ କ୍ଷମତା ହ୍ରାସ ପାଏ। ନିଜକୁ ବଞ୍ଚାଇବା ପାଇଁ ତାକୁ ଉଷ୍ମ ସ୍ଥାନକୁ ଯାଇ ଆଶ୍ରୟ ନେବାକୁ ପଡ଼େ। ସାଧାରଣତଃ ଏପରି ନିରାପଦ ସ୍ଥାନ ହେଉଛି ମାଟିତଳ। ମାଟିରେ ପ୍ରାୟ ୬୦ ସେ:ମି ପର୍ଯ୍ୟନ୍ତ ଗଭୀର

ଗାତ ଖୋଳି ରହିବାର କ୍ଷମତା ବେଙ୍ଗର ଅଛି। ପୋଖରୀ ହୁଡ଼ା, ଏପରିକି ପୋଖରୀ ତଳର ପଙ୍କ ଭିତରେ ମଧ୍ଯ ବେଙ୍ଗମାନେ ଏହିପରି ଗାତ ଖୋଳି ରହିବାର ଦେଖାଯାଏ। ପୁରା ଶୀତଋତୁଟି ସେମାନଙ୍କର ଏହି ଗାତ ଭିତରେ କଟେ। ଜୀବଟିର ଏହି ଅବସ୍ଥାକୁ 'ଶୀତନିଦ୍ରା' କୁହାଯାଏ।



ଶୀତନିଦ୍ରା ସମୟରେ ବେଙ୍ଗ ଶରୀରର ଆଭ୍ୟନ୍ତରିଣ କ୍ରିୟା ଅତି ମନ୍ଥର ହୋଇଯାଏ। ଆଖି, ନାକ ଓ ପାଟି ବନ୍ଦ ରହିଥାଏ। ନାକବାଟେ ନିଃଶ୍ୱାସ ପ୍ରଶ୍ୱାସ ଚଳପ୍ରଚଳ ହୁଏନାହିଁ, ଯଦିବା ନିଃଶ୍ୱାସ ନେବା ପାଇଁ ବେଙ୍ଗର ଆର୍ଦ୍ର ଚର୍ମ ସାହାଯ୍ୟ କରିଥାଏ। ଚର୍ମ ବେଙ୍ଗର ଏକପ୍ରକାର ଶ୍ୱାସଯନ୍ତ୍ର। ଖାଦ୍ୟ ବିନା କୌଣସି ପ୍ରାଣୀ ମାସ ମାସ ଧରି ବଞ୍ଚିବା ସମ୍ଭବ ନୁହେଁ, କିନ୍ତୁ ବେଙ୍ଗ ଶରୀରରେ ଥିବା ଚର୍ବି ଓ ଗ୍ଲାଇକୋଜେନ୍ ତାକୁ ବଞ୍ଚିବାରେ ସାହାଯ୍ୟ କରେ। ଶୀତନିଦ୍ରାକାଳରେ ବେଙ୍ଗ ଶରୀର ଅତ୍ୟନ୍ତ ଦୁର୍ବଳ ଥାଏ, କିନ୍ତୁ ସେ ମରିଯାଏନାହିଁ। ଶୀତଋତୁ ପରେପରେ ବାୟୁମଣ୍ଡଳରେ ଉତ୍ତାପ ବଢ଼େ। ଏହି ସମୟରେ ବେଙ୍ଗର ଶୀତନିଦ୍ରା ଭାଙ୍ଗେ ଓ ସେ ଗାତରୁ ବାହାରିଆସେ।

ଗ୍ରୀଷ୍ମକାଳରେ ବାୟୁମଣ୍ଡଳର ତାପମାତ୍ରା ଅଧିକ ହେଲେ ଗଡ଼ିଆ ପୋଖରୀର ପାଣି ଶୁଖିଯାଏ। ବେଙ୍ଗମଧ୍ଯ ଅତ୍ୟଧିକ ତାପମାତ୍ରା ସହିନପାରି ଓଦାମାଟି ଓ ସନ୍ତସନ୍ତିଆ ଜାଗା ଦେଖି ମାଟି ଭିତରେ ପଶେ। ଏହାକୁ ବେଙ୍ଗର 'ଗ୍ରୀଷ୍ମନିଦ୍ରା' କୁହାଯାଏ। ପୁଣି ବର୍ଷା ଆରମ୍ଭ ହେଲେ ବେଙ୍ଗର ଗ୍ରୀଷ୍ମ ନିଦ୍ରା ଭାଙ୍ଗେ।

---

# ପୃଥିବୀର ଦୀର୍ଘାୟୁ ଜୀବ

ଆମେ ଦେଖିବା ଭିତରେ ହାତୀ ଗୋଟିଏ ବୃହତ୍‌କାୟ ପ୍ରାଣୀ। ଏ କେବଳ ଆକାରରେ ବଡ଼ ନୁହେଁ, ଏହାର ଆୟୁଷକାଳ ମଧ୍ୟ ବେଶି ଦୀର୍ଘ। ହାତୀମାନେ ସାଧାରଣତଃ ୧୦୦ ବର୍ଷରୁ ଉର୍ଦ୍ଧ୍ୱ ପର୍ଯ୍ୟନ୍ତ ବଞ୍ଚନ୍ତିବୋଲି ଆମର ଧାରଣା। କିନ୍ତୁ ପର୍ଯ୍ୟବେକ୍ଷଣରୁ ଜଣାଯାଇଛି ଯେ ଏମାନଙ୍କର ଆୟୁ ପ୍ରାୟ ୬୦ ବର୍ଷ। ଘୋଡ଼ାମାନଙ୍କର ସର୍ବୋଚ୍ଚ ଆୟୁ ୫୦ ବର୍ଷରୁ ବେଶି ନୁହେଁ। ସେହିପରି ବୈଜ୍ଞାନିକ ତଥ୍ୟାବଳୀରୁ ଜଣାପଡ଼େ ଯେ ଗଣ୍ଡାଜାତୀୟ ଜୀବମାନେ ସାଧାରଣତଃ ୪୦ ବର୍ଷ ବଞ୍ଚନ୍ତି। ଏହି କ୍ରମରେ ଭାଲୁ ୩୪ ବର୍ଷ, ମାଙ୍କଡ଼ ୨୦ ବର୍ଷ, ବିରାଡ଼ି ୨୩ ବର୍ଷ ଓ କୁକୁର ୨୨ ବର୍ଷ ବଞ୍ଚନ୍ତି।

ପକ୍ଷୀମାନଙ୍କ ଭିତରେ ଶୁଆ ଓ ଚିଲ ଦୀର୍ଘାୟୁ। ଶୁଆର ପରମାୟୁ ୫୪ ବର୍ଷ। ଚିଲ ୫୫ ବର୍ଷ ଓ ଧଳା ପାତିହଂସ ୫୧ ବର୍ଷ ବଞ୍ଚିବାର ଜଣାଯାଇଛି।

ସାନ ସାନ ପକ୍ଷୀମାନଙ୍କ ଭିତରେ ଷ୍ଟାର୍ଲିଂ ୧୭ ବର୍ଷ, କ୍ୟାନେରୀ ୨୨ ବର୍ଷ, ଘରଚଟିଆ ୨୩ ବର୍ଷ ଏବଂ କାଡ଼ିନାଲ୍ ୩୦ ବର୍ଷ ବଞ୍ଚବାର ଜଣାଯାଏ।

ମାଛମାନଙ୍କ ଭିତରେ କାର୍ପଜାତୀୟ ମାଛ ପ୍ରାୟ ୨୫ ବର୍ଷ ବଞ୍ଚିବା ଜଣାଯାଏ। କେତେକ ଜାତିର ଅକାଟିଆ ମାଛ ୫୦ରୁ ୬୦ ବର୍ଷ ବଞ୍ଚିବା ଜଣାଯାଇଛି।

ଜୀବଜଗତ୍‌ର ସବୁଠାରୁ ଦୀର୍ଘାୟୁ ପ୍ରାଣୀ ହେଲେ କଇଁଛ। କଇଁଛମାନେ ପ୍ରାୟ ୨୦୦ ବର୍ଷ ବଞ୍ଚିବାର ପ୍ରମାଣ ଅଛି।

—

## କେଉଁ ପ୍ରାଣୀ କେତେ ବେଗରେ ଦୌଡ଼ିପାରେ

ପ୍ରାଣୀମାନେ ଜୀବନ ରକ୍ଷା କରିବାପାଇଁ ଦ୍ରୁତ ବେଗରେ ଦୌଡ଼ିପାରିବା ଦରକାର। ଶିକାରୀ ପ୍ରାଣୀମାନେ ଶିକାରର ଗତିକୁ ଟପି ଧାଇଁ ନପାରିଲେ ଶିକାର କରି ପାରିବେ ନାହିଁ। ଉଭୟ ଆତ୍ମରକ୍ଷା ଓ ଖାଦ୍ୟ ଆହରଣ ଉଦ୍ଦେଶ୍ୟରେ ପ୍ରତି ପ୍ରାଣୀର ଗତିଶୀଳତା ତା'ର ସଫଳ ଜୀବନର ମାପକାଠି ବୋଲି ଧରାଯାଇପାରେ। ବିଭିନ୍ନ ପ୍ରାଣୀଙ୍କର ଗତି ଓ ବେଗ ଭିନ୍ନ ପ୍ରକାରର।

ଚିତ୍ରରେ ଏ ସଂପର୍କରେ କେତେକ ତଥ୍ୟ ଦର୍ଶାଯାଇଛି। ସେଥିରୁ ଦେଖାଯିବ ଯେ ଚିତାବାଘ ସବୁଠାରୁ ବେଗଗାମୀ ପ୍ରାଣୀ। ତା'ର ଗତି ଘଣ୍ଟାକୁ ୧୧୦ରୁ ୧୨୦ କିଲୋମିଟର। ହରିଣ ୯୦ରୁ ୧୦୦, ସିଂହ ୮୦ରୁ ୯୦, ଠେକୁଆ ୭୦ରୁ ୮୦, ଘୋଡ଼ା, ଜେବ୍ରା ଓ ଗ୍ରେହାଉଣ୍ଡ କୁକୁର ୬୦ରୁ ୭୦, ମଇଁଷି ୫୦ରୁ ୬୦, ଜିରାଫ୍ ଓ ଗଣ୍ଡା ୪୦ରୁ ୫୦, ହାତୀ ୩୦ରୁ ୪୦, କଙ୍ଗାରୁ ୨୦ରୁ ୩୦ ଓ ଓଟ ୧୦ରୁ ୨୦ କିଲୋମିଟର ବେଗରେ ଦୌଡ଼ିପାରନ୍ତି।

ଚାରିଗୋଡ଼ିଆ ପ୍ରାଣୀମାନଙ୍କର ଦୌଡ଼ିବା ଠାଣି ଓ ବେଗ ସଂପର୍କରେ ବହୁ ଗବେଷଣା କରାଯାଇଛି। ସେଥିରୁ ଜଣାପଡ଼େ ଯେ ଦ୍ରୁତଗାମୀ ପ୍ରାଣୀମାନେ ଦୀର୍ଘ ସମୟ ଧରି ସର୍ବୋଚ୍ଚ ଗତିରେ ଦୌଡ଼ି ପାରନ୍ତି ନାହିଁ। କିନ୍ତୁ ସେମାନେ ଯେଉଁ ବେଗ ନେଇ ତାଙ୍କର ଦୌଡ଼ ଆରମ୍ଭ କରନ୍ତି ତାହା ହିଁ ତାଙ୍କ ବେଗର ମାପକାଠି।

## ପଶୁଜଗତ୍‌ରେ ମାଆ ଛୁଆକୁ ଚିହ୍ନେ କେମିତି ?

ଆମ ଏ ପୃଥିବୀରେ ଦଶଲକ୍ଷରୁ ଅଧିକ ପ୍ରକାରର ଜୀବଜନ୍ତୁ ବାସକରନ୍ତି। ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦିଶୁଥିବା ଜୀବାଣୁଠାରୁ ଆରମ୍ଭ କରି ବୃହଦ୍ ଆକାରର ତିମି ମାଛ ପର୍ଯ୍ୟନ୍ତ ଏଥିର ଅନ୍ତର୍ଭୁକ୍ତ। ଏତେ

ପ୍ରକାର ପ୍ରାଣୀଙ୍କ ଭିତରୁ ମାଆଟିଏ ତା' ଛୁଆକୁ ଚିହ୍ନେ କେମିତି ?

ଜଙ୍ଗଲରେ ରହୁଥିବା ଜୀବଜନ୍ତୁ, ସମୁଦ୍ରରେ ପହଁରୁଥିବା ଜଳଚର ପ୍ରାଣୀ, ଆକାଶରେ ଉଡ଼ିବୁଲୁଥିବା ଚଢ଼େଇମାନେ କେମିତି ଚିହ୍ନନ୍ତି ତାଙ୍କ ଛୁଆଙ୍କୁ ?

ଜୀବଜଗତରେ ମଧ୍ୟ ବାପ ମାଆ ପିଲାର ଯତ୍ନନେଇ ତାଙ୍କୁ ବଢ଼ାନ୍ତି। ସେଠି ମାଆ ଓ ପିଲାଏ ପରସ୍ପରକୁ ଚିହ୍ନିପାରୁଥିବା ନିହାତି ଦରକାର। ପ୍ରକୃତି ତାଙ୍କ ପାଇଁ ଉପାୟ ଖଞ୍ଜିଚି। ସେମାନେ ପରସ୍ପରଠାରୁ ବିଛିନ୍ନ ହେଲାପରେ ଶବ୍ଦବାରିବା, ଶୁଂଘିବା, ଦେଖିବା ଓ ଛୁଇଁବା ଏଇ ଚାରୋଟି କଥାରୁ ପୁଣି ମାଆ ପିଲା ଏକାଠି ହୋଇଯାଆନ୍ତି।

ଅଧିକାଂଶ ଜନ୍ତୁ କେବଳ ବାସ୍ନାରୁ ତାଙ୍କ ଛୁଆଙ୍କୁ ଚିହ୍ନନ୍ତି। ହରିଣ, ମେଣ୍ଢା, ଘୋଡ଼ା, ସିଲ୍‌ମାଛଙ୍କର ଏ ହେଲା ସାଧାରଣ ପ୍ରକୃତି। ଫଳେ ମେଣ୍ଢାଙ୍କ ଭିତରେ ପ୍ରତି ମାଆ ଠିକ୍ ତା' ଛୁଆକୁ ଆଦରି ନିଏ ଓ ଅନ୍ୟଛୁଆ ଅଜାଣତରେ ତା' ପାଖକୁ ଆସିଲେ ଏ ମାଆ ତାକୁ ଆଡ଼େଇ ଦେଇ ଦୂରକୁ-ଚାଲିଯାଏ।

କେତେକ ଜୀବ ଅଛନ୍ତି, ଛୁଆ ଜନ୍ମ ହେଲାମାତ୍ରେ ମାଆ ତାକୁ ଶୁଙ୍ଘି ତା' ବାସ୍ନା ମନେରଖିଦିଏ ଓ ସେହି ଦିନଠାରୁ ଯେ କୌଣସି ମୁହୂର୍ତ୍ତରେ ମନ କଲେ ଶହ ଶହ ଛୁଆଙ୍କ ଭିତରୁ ଶୁଂଘି ଶୁଂଘି ସେ ଠିକ୍ ତା' ଛୁଆକୁ ଠାବକରିପାରେ।

ଚଢ଼େଇମାନେ ଶବ୍ଦରୁ ଚିହ୍ନନ୍ତି। ପ୍ରତି ଚଢ଼େଇ ବାପ ମାଆଙ୍କର ଭିନ୍ନ ଭିନ୍ନ ଡାକ। ଅଣ୍ଡା ଫୁଟିଲାମାତ୍ରେ ଚଢ଼େଇ ଛୁଆ ତା' ମାଆର ଡାକରୁ ତାକୁ ଚିହ୍ନିପାରେ।

ଅଷ୍ଟ୍ରେଲିଆର ପ୍ରକୃତି ବିଜ୍ଞାନୀ ଡଃ କୋନାର୍ଡ଼ ଲରେଞ୍ଜ୍ ବତକମାନଙ୍କ ଉପରେ ଏକ ବିଶେଷ ପରୀକ୍ଷା କରିଥିଲେ। ଅଣ୍ଡାଗୁଡ଼ିକ ଫୁଟିବା ଠିକ୍ ପୂର୍ବରୁ ସେ ତାଙ୍କ ପରୀକ୍ଷା ଆରମ୍ଭ କଲେ। ସେତେବେଳେ ମାଆ ବତକକୁ ସେଠୁ ବିଦାକରିଦେଇ ନିଜେ ସେଠି ବସିରହିଲେ। ଯେମିତି ଅଣ୍ଡା ଫାଟିଲା, ମାଆ ବତକ ଯେମିତି ସ୍ୱର କରି ତା' ଛୁଆଙ୍କୁ ଡାକେ ଠିକ୍ ସେମିତି ସେ ନିଜେ ଗୋଟେ ପ୍ରକାର ଶବ୍ଦ କଲେ। ଦେଖାଗଲା

ଯେ ସେଇ ଶବ୍ଦ ଶୁଣି କୁନି କୁନି ଛୁଆଗୁଡ଼ାକ ତାଙ୍କ ମାଆକୁ ଛାଡ଼ି ଏହାଙ୍କ ପଛରେ ଗୋଡ଼େଇଲେ । ଅବଶ୍ୟ ସେ ଠିଆହୋଇପଡ଼ିଲାରୁ ଛୁଆଗୁଡ଼ାକ ହଡ଼ବଡ଼େଇଯାଆନ୍ତି; କିନ୍ତୁ ସେ ଯେମିତି ସେଇ ସ୍ୱର କରି ଗୁରୁଣ୍ଡି ଗୁରୁଣ୍ଡି ଚାଲନ୍ତି ସେମାନେ ଆନନ୍ଦରେ ତାଙ୍କରି ପଛରେ ଗୋଡ଼ାଉଥାଆନ୍ତି ।

ସ୍ପର୍ଶରୁ ମଧ୍ୟ ମାଆ ପିଲା ଚିହ୍ନାଚିହ୍ନି ହୁଅନ୍ତି । ମାଆ ତା' ପିଲାକୁ ଚିହ୍ନିବାପାଇଁ ପ୍ରକୃତି କେତେ ବ୍ୟବସ୍ଥା କରିଚି ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ନହେଲେ ଏ ମହାପ୍ରକୃତି ଭିତରେ ସମସ୍ତେ ହଜିଯାଆନ୍ତେ ।

## ପ୍ରାଣୀମାନେ କେବେଠାରୁ ପୋଷା ମାନିଲେ ?

ଗାଈଗୋରୁ, ମଇଁଷି, ଛେଳି, ମେଣ୍ଢା ଇତ୍ୟାଦିଙ୍କୁ ଗୃହପାଳିତ ପଶୁ କୁହାଯାଏ । ସେହିପରି କୁକୁଡ଼ା, ବତକ, ପାରା ପ୍ରଭୃତି ପକ୍ଷୀମାନଙ୍କୁ ଘରେ ପୋଷାଯାଇଥାଏ । ଏମାନଙ୍କଠାରୁ ଦୁଧ, ଦହି, ଘିଅ ଓ ଅଣ୍ଡା ପ୍ରଭୃତି ଖାଦ୍ୟଦ୍ରବ୍ୟ ମିଳେ । ମାଂସ ଓ ଚମଡ଼ାପାଇଁ ମଧ୍ୟ ଗୃହପାଳିତ ପ୍ରାଣୀମାନଙ୍କ ଉପରେ ମଣିଷ ନିର୍ଭର କରେ । ଏହିସବୁ ପଶୁ ପକ୍ଷୀମାନଙ୍କୁ ମଣିଷ କେବେଠାରୁ ପୋଷା ମନାଇ ସେମାନଙ୍କୁ ଗୃହପାଳିତ କରିଛି, ସେକଥା ଆମେ ବେଳେବେଳେ ଭାବୁ । ଅବଶ୍ୟ ଏହାର ନିର୍ଦ୍ଦିଷ୍ଟ ଉତ୍ତର କିଛି ମିଳେ ନାହିଁ; କିନ୍ତୁ କେତେଗୁଡ଼ିଏ ପ୍ରମାଣରୁ ଜଣାଯାଏ ଯେ, ହଜାର ହଜାର ବର୍ଷ ତଳେ ଆଦିମ ମଣିଷ ଜଙ୍ଗଲରେ ବାସକରୁଥିବାବେଳେ ବଣର ପଶୁପକ୍ଷୀମାନଙ୍କୁ ପୋଷା ମନେଇ ଘରେ ରଖିବା ଅଭ୍ୟାସ କରିଛି ।

ଆଦିମ ମଣିଷର ବାସସ୍ଥାନ ଥିଲା ପର୍ବତ ଗହ୍ୱର । ଏହି ପାହାଡ଼ିଆ ଗୁହା ଭିତରେ ବାସକରୁଥିବାବେଳେ ଗୁହା କାନ୍ଥରେ ସେ କେତେକ ଚିତ୍ର ଆଙ୍କିଥିଲା । ତା' ଭିତରୁ ଅନେକ ଚିତ୍ର ହଜାର ହଜାର ବର୍ଷ ପରେ ଏବେ ଆବିଷ୍କୃତ ହୋଇଛି । ଏହି ଚିତ୍ରରୁ ଜଣାପଡ଼େ ଯେ ମଣିଷର ପ୍ରଥମ ଗୃହପାଳିତ ପଶୁ ହେଲା କୁକୁର । କୁକୁର ସାହାଯ୍ୟରେ ଆଦିମାନବ ଶିକାର କରିବାର ଚିତ୍ର ଗୁହା କାନ୍ଥରୁ ମିଳେ । ସେସବୁ ଚିତ୍ରରୁ ଆହୁରି ଜଣାପଡ଼େ ଯେ ଆଦିମ ମଣିଷ ବଣୁଆ ଗାଈ, ମଇଁଷି, ଛେଳି, ମେଣ୍ଢା, ଘୁଷୁରି,

ଘୋଡ଼ା ପ୍ରଭୃତିଙ୍କୁ ମଧ୍ୟ କାଳକ୍ରମେ ପୋଷା ମନାଇଁ ପାରିଛି। ତେବେ ଆହୁରି କେତେକ ବୈଜ୍ଞାନିକ ଅନୁସନ୍ଧାନରୁ ଜଣାଯାଏ ଯେ, ଆଦିମ ମଣିଷ ପ୍ରଥମେ ପକ୍ଷୀମାନଙ୍କୁ ପୋଷା ମନାଇବାର କୌଶଳ ଆୟତ୍ତ କରିପାରିଥିଲା। ପଶୁ ଅପେକ୍ଷା ପକ୍ଷୀଙ୍କର ଶାବକଙ୍କୁ ଗଛରୁ ଓ ମାଟି ଉପରୁ ଧରିବା ସହଜ। ଏମାନଙ୍କୁ ଧରି ଗୁହା ବା କୁଡ଼ିଆ ଭିତରେ ରଖି ପାଳିଲା ପରେ ସେମାନେ ପୋଷା ମାନିଯାନ୍ତି। ଏମାନଙ୍କୁ ଖାଇବାକୁ ପିଇବାକୁ ଦେଇ ବଡ଼ କଲାପରେ ସେମାନଙ୍କଠାରୁ ଅଣ୍ଡା ସଂଗ୍ରହ କରିବା କୌଶଳ ମଣିଷ ପ୍ରଥମେ ଶିଖିଥିଲା।

ଆଦିମ ମଣିଷ କେବଳ ଖାଦ୍ୟ ପାଇଁ ପଶୁପାଳନ କରୁନଥିଲା। ଭାରବହନ ଓ ଯାନବାହନ ପାଇଁ ମଧ୍ୟ ସେମାନଙ୍କୁ ବ୍ୟବହାର କରି ଶିଖିଥିଲା। ଏହି କାରଣରୁ ବଣୁଆ ଘୋଡ଼ା, ଗଧ, ଓଟ, ୟାକ୍ ପ୍ରଭୃତି ପ୍ରାଣୀଙ୍କୁ ସେ କୌଶଳକ୍ରମେ ଧରି ପୋଷାମନାଇଥିଲା। ମଧ୍ୟ-ଏସିଆର ଆଦିମ ଅଧିବାସୀମାନେ ପ୍ରଥମେ ଭାରବାହୀ ପଶୁପାଳନ କୌଶଳ ଶିକ୍ଷା କରିଥିଲେ। ଏହାର ଅନେକ ବର୍ଷ ପରେ ହାତୀମାନଙ୍କୁ ମଧ୍ୟ ପୋଷା ମନାଇବା କୌଶଳ ମଣିଷ ଆୟତ୍ତ କଲା। ଆଜିକୁ ତିନିହଜାର ଛଅଶହ ବର୍ଷ ତଳେ ମିଶର (ଇଜିପ୍ଟ)ର ଲୋକେ ଘରେ ପୋଷା ବିରାଡ଼ି ରଖିବାର ପ୍ରମାଣ ମିଳେ। ବଣର ବିଭିନ୍ନ ପଶୁମାନଙ୍କୁ ଧରି ପୋଷାମନାଇବା କାମ ସଭ୍ୟତାର ବିକାଶ ସହିତ କ୍ରମଶଃ ଲୋପ ପାଇ ଆସୁଛି। ଗତ କେତେ ଶତାବ୍ଦୀ ଭିତରେ କୌଣସି ନୂଆ ପ୍ରକାର ଜନ୍ତୁକୁ ପୋଷାମନାଇବା କାମ ମଣିଷ ପ୍ରାୟ ହାସଲ କରି ନାହିଁ। ଆଧୁନିକ ମଣିଷ ପଶୁ ପରିବର୍ତ୍ତେ ଯନ୍ତ୍ର ପ୍ରତି ଅଧିକ ଆଗ୍ରହ ପ୍ରକାଶ କରିଛି।

## ପ୍ରାଣୀ ଓ ସେମାନଙ୍କ ପରିବେଶ

ପୃଥିବୀର ପ୍ରାୟ ସବୁ ଅଞ୍ଚଳରେ ବିଭିନ୍ନ ପ୍ରକାର ପଶୁପକ୍ଷୀ ବାସ କରନ୍ତି। କିନ୍ତୁ ପୃଥିବୀର ବିଭିନ୍ନ ସ୍ଥାନର ଜଳବାୟୁ ସମାନ ନୁହେଁ। ମେରୁ ଅଞ୍ଚଳ ବର୍ଷଯାକ ବରଫାଚ୍ଛନ୍ନ ରହିଥାଏ। ବିଷୁବ ମଣ୍ଡଳର ଜଳବାୟୁ ଖୁବ୍

ଗରମ। ମରୁଭୂମିରେ ବର୍ଷସାରା ଖୁବ୍ କମ୍ ବର୍ଷା ହୁଏ ବା ଆଦୌ ବର୍ଷା ହୁଏ ନାହିଁ। କେଉଁ କେଉଁ ଅଞ୍ଚଳରେ ବର୍ଷର ଅଧିକାଂଶ ଦିନ ବର୍ଷା ହେଉଥାଏ। ଏହି ସବୁ ପରିସ୍ଥିତି ଭିତରେ ପ୍ରତି ଅଞ୍ଚଳର ପ୍ରାଣୀମାନେ ଜୀବନ ଧାରଣ କରିବାକୁ ସକ୍ଷମ ହୋଇଥାନ୍ତି। ସେଥିପାଇଁ ପ୍ରତି ଅଞ୍ଚଳର ଜଳବାୟୁକୁ ନେଇ ଯେଉଁ ପରିବେଶ ସୃଷ୍ଟି ହୋଇଥାଏ ସେହି ପରିବେଶ ସହିତ ଖାପଖୁଆଇ ପ୍ରତ୍ୟେକ ପ୍ରାଣୀକୁ ଜୀବନ ଧାରଣ କରିବାକୁ ପଡ଼େ। ପ୍ରାକୃତିକ ବିପର୍ଯ୍ୟୟରୁ ଅନେକ ସମୟରେ ଏକ ପରିବେଶରୁ ଅନ୍ୟ ଏକ ପରିବେଶକୁ ପ୍ରାଣୀମାନଙ୍କୁ ସ୍ଥାନାନ୍ତରିତ ହେବା ଦରକାର ପଡ଼େ। ସେପରି ଅବସ୍ଥାରେ ପରିବର୍ତ୍ତିତ ପରିସ୍ଥିତି ସହିତ ପ୍ରାଣୀମାନଙ୍କୁ ଖାପ ଖୁଆଇ ବଞ୍ଚି ରହିବାକୁ ହୁଏ। ପରିବର୍ତ୍ତନକୁ ଆଦରିନେବା କ୍ଷମତା ଯୋଗୁଁ ଜୀବ ଜଗତ ସୃଷ୍ଟି ଆରମ୍ଭରୁ ଏପର୍ଯ୍ୟନ୍ତ ପୃଥିବୀ ପୃଷ୍ଠରେ ବଞ୍ଚିରହିପାରିଛି। ପଶୁପକ୍ଷୀଙ୍କପରି ଗଛଲତା, କୀଟପତଙ୍ଗ ମଧ୍ୟ ଏ କ୍ଷମତାର ଅଧିକାରୀ। ଯେଉଁଠି କୌଣସି ପ୍ରାଣୀ ପରିବେଷ ସହିତ ଖାପଖୁଆଇ ଚଳି ନଶିଖେ ସେଠାରେ ପ୍ରାଣୀର ମୃତ୍ୟୁ ଅବଶ୍ୟମ୍ଭାବୀ। ଏହି କାରଣରୁ ଅନେକ ଜାତିର ପ୍ରାଣୀ ପୃଥିବୀପୃଷ୍ଠରୁ ଲୋପ ହୋଇଯାଇଥିବା ଜଣାଯାଏ।

ବିଭିନ୍ନ ପରିବେଶ ସହିତ ଖାପ ଖାଇ ଚଳୁଥିବା ପ୍ରାଣୀର ଆକୃତି-ପ୍ରକୃତି ଭିନ୍ନ ଭିନ୍ନ ହୋଇଥାଏ। ମେରୁ ଅଞ୍ଚଳର ବରଫ ଭିତରେ ବାସ କରୁଥିବା ଭାଲୁମାନଙ୍କ ରଙ୍ଗ ସାଧାରଣତଃ ବରଫ ପରି ଧଳା। କିନ୍ତୁ ଉଷ୍ଣ ଜଳବାୟୁରେ ବାସକରୁଥିବା ଭାଲୁମାନଙ୍କର ରଙ୍ଗ କଳା ବା ବାଦାମୀ।

ସେହିପରି ପକ୍ଷୀମାନଙ୍କର ଆକୃତି ପ୍ରକୃତି ଅନୁସନ୍ଧାନ କଲେ ଜଣାଯାଏ ଯେ, ଶିକାରୀ ପକ୍ଷୀମାନଙ୍କର ଥଣ୍ଟ ଓ ନଖ ଅଣଶିକାରୀ ପକ୍ଷୀମାନଙ୍କର ଥଣ୍ଟ ଓ ନଖଠାରୁ ଭିନ୍ନ। ଇଗଲ୍, ଚିଲ, ଶାଗୁଣା, କାଠହଣା, ମାଛରଙ୍କା ପ୍ରଭୃତି ପକ୍ଷୀମାନଙ୍କର ଥଣ୍ଟ ଓ ନଖ ବଣି, ପାରା, ଘରଚଟିଆ ପ୍ରଭୃତି ସାଧାରଣ ପକ୍ଷୀଙ୍କ ଥଣ୍ଟ ଓ ନଖ ତୁଳନାରେ ବଡ଼ ଓ ତୀକ୍ଷ୍ଣ।

ଉଦ୍ଭିଦଜଗତରେ ମଧ୍ୟ ଏହାର ଉଦାହରଣ ଆହୁରି ସ୍ପଷ୍ଟ। ବରଗଛ ସାଧାରଣତଃ ଉଷ୍ଣ ଓ ଆର୍ଦ୍ର ଜଳବାୟୁରେ ବଢ଼େ। ଏହାର ଶାଖା ପ୍ରଶାଖାରେ ସବୁଜ ପତ୍ର ଭରି ରହିଥାଏ। କିନ୍ତୁ ମରୁଭୂମିର ଅତି ଗରମ ଓ ଶୁଷ୍କ ଜଳବାୟୁରେ ଏପରି ଗଛ ବଞ୍ଚିପାରେ ନାହିଁ। ସେଠି ନାଗଫେଣି ଜାତିର

ଗଛମାନେ ଉଧାଇପାରନ୍ତି । ଏ ସବୁ ଗଛରେ ପତ୍ର ନଥାଏ ।

ପରିବେଶ ସହିତ ଜୀବର ଖାପ ଖୁଆଇବା କଥା ଦୁଇ ପ୍ରକାର । ପ୍ରଥମଟି ବ୍ୟକ୍ତିଗତ ଓ ଦ୍ୱିତୀୟଟି ଗୋଷ୍ଠୀଗତ । ନିଜର ଜୀବନ କାଳ ଭିତରେ ପ୍ରତ୍ୟେକ ପ୍ରାଣୀ ତା'ର ପରିବେଶର ପରିବର୍ତ୍ତନ ସହିତ ହୁଏତ ଚଳି ଶିଖିପାରେ; କିନ୍ତୁ ଗୋଷ୍ଠୀଗତ ଭାବେ ଏପରି ଚଳଣି ସବୁବେଳେ ସମ୍ଭବ ନୁହେଁ । ପରିବେଶର ପରିବର୍ତ୍ତନ ସହିତ କୌଣସି ଗୋଷ୍ଠୀର ପ୍ରାଣୀଙ୍କୁ ଖାପ ଖୁଆଇବାପାଇଁ ପୁରୁଷାନୁକ୍ରମିକଭାବେ ଚେଷ୍ଟା କରିବାକୁ ପଡ଼େ । ଏହା ଏକ ସମୟସାପେକ୍ଷ ଓ ମନ୍ଥର ପ୍ରକ୍ରିୟା । ଏହି ପ୍ରକ୍ରିୟାରେ ସଫଳ ହୋଇନପାରିଲେ ଜୀବ ଗୋଷ୍ଠୀର ବିନାଶ ଘଟେ ।

ପ୍ରାଣୀମାନଙ୍କ ଗୋଷ୍ଠୀଗତ ଖାଦ୍ୟାଭ୍ୟାସ ସେମାନଙ୍କ ଆକୃତିକୁ ଅନେକ ସମୟରେ ପ୍ରଭାବିତ କରେ । ଉଦାହରଣସ୍ୱରୂପ, ଜିରାଫ୍ ଏକଦା ଏକ ତୃଣଭୋଜୀ ପ୍ରାଣୀ ରୂପେ ତଳକୁ ବେକ ବଢ଼ାଇ ମାଟି ଉପରୁ ଘାସଖାଇ ବଞ୍ଚୁଥିଲା । ସେତେବେଳେ ତା'ର ବେକ ସାଧାରଣ ଗୋରୁ ଗାଈଙ୍କ ବେକ ପରି ସାନ ଥିଲା । ଏକ ସମୟରେ ସେମାନେ ବାସ କରୁଥିବା ଆଫ୍ରିକା ମହାଦେଶର କୌଣସି ଏକ ଅଞ୍ଚଳରେ ବର୍ଷା ଅଭାବ ଯୋଗୁଁ ଘାସ ସବୁ ଶୁଖିଗଲା । ଭୂଇଁ ଉପରେ ଚରିନପାରି ଜିରାଫ୍‌ମାନେ ଉପରକୁ ମୁହଁ ବଢ଼ାଇ ଗଛରୁ ପତ୍ର ଖାଇ ପ୍ରାଣଧାରଣ କରିବା ଅଭ୍ୟାସ ଆରମ୍ଭ କରିଦେଲେ । କାଳକ୍ରମେ ସେମାନଙ୍କର ଶାବକମାନଙ୍କର ବେକ ଲମ୍ୱା ହେବାକୁ ଆରମ୍ଭ କଲା । ବଂଶାନୁକ୍ରମେ ଏହି ପରିବର୍ତ୍ତନ ଘଟି ସେମାନଙ୍କର ବେକ ଖୁବ୍ ଦୀର୍ଘ ହୋଇଗଲା । ଏହି ଲମ୍ୱାବେକ ଯୋଗୁଁ ଜିରାଫ୍‌ର ଖାଦ୍ୟ ସଂଗ୍ରହ ଖୁବ୍ ସୁବିଧା ହୁଏ । ବଣର ଖୁବ୍ ବଡ଼ ବଡ଼ ଗଛର ଉଚ୍ଚ ଡାଳକୁ ବେକ ବଢ଼େଇ ଜିରାଫ୍ ଡାଳ ପତ୍ର ଖାଇପାରେ । ଜିରାଫ୍‌ର ବେକର ଏହି ପରିବର୍ତ୍ତନ ଗୋଷ୍ଠୀଗତଭାବେ ଦୀର୍ଘକାଳଧରି ବଂଶାନୁକ୍ରମେ ଘଟିଆସିଥିଲା ।

ପୃଥିବୀର ଜଳବାୟୁକୁ ନେଇ ଗଢ଼ିଉଠିଥିବା ପରିବେଶ ଆଧୁନିକ ଯୁଗରେ ଖୁବ୍ ଦ୍ରୁତଗତିରେ ପରିବର୍ତ୍ତିତ ହେଉଛି । ଏଥିପାଇଁ ମଣିଷର କ୍ରମବର୍ଦ୍ଧିଷ୍ଣୁ ସଭ୍ୟତା ହିଁ ଦାୟୀ । ବଣ ପାହାଡ଼ରୁ ଗଛଲତା ଅଧିକ ପରିମାଣରେ କାଟିନେବା ଫଳରେ ଜଙ୍ଗଲ ସମ୍ପଦ ଦ୍ରୁତ ଗତିରେ ଧ୍ୱଂସ ହେବାରେ

ଲାଗିଛି । ଜଙ୍ଗଲରେ ବାସକରୁଥିବା ପଶୁପକ୍ଷୀମାନେ ଏହି ପରିବର୍ତ୍ତନ ସହିତ ନିଜକୁ ଖାପ ଖୁଆଇ ନପାରି ମରିଯାଉଛନ୍ତି । ମଣିଷକୁ ପରିବେଶ ସଚେତନ କରିବାପାଇଁ ଆଜି ଆଧୁନିକ ବିଜ୍ଞାନର ଆହ୍ୱାନ ସର୍ବାଧିକ ।

## ସାପ କାମୁଡ଼ିଲେ କ'ଣ ହୁଏ ?

ସବୁପ୍ରକାର ସାପ ବିଷଧର ନୁହନ୍ତି । କିନ୍ତୁ କେତେ ପ୍ରକାର ସାପ ଆତ୍ମରକ୍ଷା କରିବାପାଇଁ ବା ଶିକାର କରିବାପାଇଁ ଦଂଶନ କରନ୍ତି । ଏ ଦଂଶନରୁ ବିଷ ନିର୍ଗତ ହୁଏ । ତଦ୍ୱାରା ଆଘାତପ୍ରାପ୍ତ ପ୍ରାଣୀ ମରିଯାଇପାରେ । ଏ ପ୍ରକାର ସାପଙ୍କୁ ବିଷଧର ସର୍ପ କୁହାଯାଏ । ନାଗ, ଗୋଖର, ତମ୍ପ, ବୋଡ଼ା ପ୍ରଭୃତି କେତେ ଜାତିର ବିଷଧର ସାପ ଅଛନ୍ତି ।

ବିଷଧର ସାପ ମଣିଷକୁ କାମୁଡ଼ିବା ମାତ୍ରେ ତାର ବିଷଦାନ୍ତ ବାଟେ କିଛି ବିଷ ଝରିଆସେ । କ୍ଷତ ବାଟ ଦେଇ ତାହା ମଣିଷର ଶରୀରରେ ପ୍ରବେଶ କରେ । ଏହାପରେ ବିଷର ପ୍ରଭାବ ଶରୀର ଉପରେ ପଡ଼େ । ବିଷଧର ସର୍ପ ଦଂଶନର ଏକ ଘଣ୍ଟାରୁ ବାର ଘଣ୍ଟା ଭିତରେ ଲୋକର ମୃତ୍ୟୁ ଘଟିଥାଏ । ଶରୀର ଭିତରକୁ ଯେତେ ଅଧିକ ବିଷ ସଞ୍ଚରିବ ବିଷର ପ୍ରଭାବ ସେତିକି ବଢ଼ିବ । ଗୋଟିଏ ସାପ ଏକ ସମୟରେ ଥର ଥର କରି ଯଦି ଏକାଧିକ ବ୍ୟକ୍ତିଙ୍କୁ ଦଂଶନକରେ ତେବେ ଦେଖାଯାଏ ଯେ ପ୍ରଥମ ବ୍ୟକ୍ତିଟିର ଶରୀରରେ ସର୍ବାଧିକ ବିଷ ପ୍ରବେଶ କରିଥାଏ । ପରବର୍ତ୍ତୀ ଦଂଶନମାନଙ୍କରେ ବିଷର ପରିମାଣ କମି କମି ଯାଏ । ଫଳରେ ପ୍ରଥମ ଆଘାତ ପାଇଥିବା ବ୍ୟକ୍ତି ଉପରେ ବିଷର ପ୍ରଭାବ ସର୍ବାଧିକ ହୁଏ । ସେହିପରି ଆହାର କରିବା ପରେ ପରେ ବିଷାକ୍ତ ସର୍ପ ଦଂଶନରୁ କମ୍ ବିଷ ଝରେ ।

ସାପର ବିଷ ତା' ମୁଖ ଗହ୍ୱରରେ ଉପର ପାଟିରେ ଥିବା ବିଷ ଥଳିରେ ଜମି ରହିଥାଏ । ଦଂଶନବେଳେ ତା' ବିଷଦାନ୍ତ ବାହାରି ଆସେ ଓ ଦାନ୍ତ ଭିତରର ନଳିବାଟଦେଇ ବିଷ ପିଚ୍ ପିଚ୍ ହୋଇ ଛିଟିକି ପଡ଼େ ।

ନାଗ, ଗୋଖର, ତମ୍ପ ସାପ ପ୍ରଭୃତିଙ୍କ ବିଷ ମଣିଷର ରକ୍ତସ୍ରୋତରେ ମିଶିଲେ ତାହା ମସ୍ତିଷ୍କ ଓ ସୁଷୁମ୍ନା କାଣ୍ଡକୁ ପ୍ରଭାବିତ କରେ। ଫଳରେ ଆଘାତପ୍ରାପ୍ତ ବ୍ୟକ୍ତିର ସ୍ନାୟୁମଣ୍ଡଳ ନିସ୍ତେଜ ହୋଇଯାଏ ଓ ମାଂସପେଶି ଅଚଳ ହୋଇପଡ଼େ। ନିଃଶ୍ୱାସ ପ୍ରଶ୍ୱାସ ଧୀରେ ଧୀରେ ବନ୍ଦ ହୋଇଯାଏ ଓ ରୋଗୀର ମୃତ୍ୟୁଘଟେ। ସାପ କାମୁଡ଼ିବା ମାତ୍ରେ ଆଘାତ ସ୍ଥାନରେ ଯନ୍ତ୍ରଣା ହୁଏ ଓ ପୋଡ଼ା ଜଳା ହୁଏ। ସ୍ଥାନଟି ଫୁଲିଯାଏ। ବେଳେବେଳେ ରକ୍ତ ମଧ୍ୟ ଝରିପାରେ। ଆହତ ବ୍ୟକ୍ତି ଘୁମେଇବାକୁ ଆରମ୍ଭ କରେ। ତା' ମୁହଁରୁ ଫେଣ ବାହାରେ। ଏ ପ୍ରକାର ସୂଚନା ସହିତ ରୋଗୀର ଶାରୀରିକ ଶକ୍ତି କମି କମି ଯାଇ ଶେଷରେ ତା'ର ମୃତ୍ୟୁ ହୁଏ।

ବୋଡ଼ାଜାତୀୟ ସାପ କାମୁଡ଼ିଲେ ରୋଗୀର ହୃତ୍‌ପିଣ୍ଡର ଶକ୍ତି କ୍ଷୟ ହୁଏ। ଫଳରେ ରକ୍ତ ସଞ୍ଚାଳନ କ୍ରିୟା ବ୍ୟାହତ ହୁଏ। ସାପ କାମୁଡ଼ା ଜାଗା ଅତ୍ୟଧିକ ଫୁଲିଯାଏ। ଦେହରେ ପୋଡ଼ାଜଳା ଅନୁଭୂତ ହୁଏ। କ୍ରମଶଃ ଫୁଲା ବଢ଼ିବାକୁ ଲାଗେ। ରୋଗୀର ଦେହରୁ ଝାଳ ବହେ ଓ ବାନ୍ତି ହୋଇପାରେ। କେତେ ଘଣ୍ଟା ପରେ ରୋଗୀର ହୃତ୍‌ପିଣ୍ଡ ବନ୍ଦହୋଇଯାଏ।

ସାପକାମୁଡ଼ା ରୋଗୀର ଚିକିତ୍ସାରେ ହେଳାକରିବା ଉଚିତ୍ ନୁହେଁ। ତାହାକୁ ଅତିଶୀଘ୍ର ନିକଟସ୍ଥ ଡାକ୍ତରଖାନାକୁ ନେଇଯାଇ ଚିକିତ୍ସା ଆରମ୍ଭ କରାଯିବା ଉଚିତ। ସାପ କାମୁଡ଼ାର ପ୍ରତିଷେଧକ ଔଷଧ ଡାକ୍ତରଖାନାରେ ଗଚ୍ଛିତ ଥାଏ। ଯଦି ନିକଟରେ ଡାକ୍ତରଖାନା ନଥାଏ ତେବେ ରୋଗୀକୁ ପ୍ରାଥମିକ ଚିକିତ୍ସା କରାଯାଇ ପରେ ଡାକ୍ତରଖାନା ପଠାଯିବା ଉଚିତ୍।

□ □ □